# କୃତି ଓ କୃତିତ୍ୱ

ଶ୍ରୀ ମାଗୁଣି ଦାଶଙ୍କ ୭୭ତମ ଜୟନ୍ତୀ
ଉପଲକ୍ଷେ

# ଅଭିନନ୍ଦନିକା

ସଂପାଦକ
ଡ଼. ବିବେକାନନ୍ଦ ପାଣିଗ୍ରାହୀ

# କୃତି ଓ କୃତିତ୍ୱ

ଶ୍ରୀ ମାଗୁଣି ଦାସଙ୍କ ୬୭ ତମ ଜୟନ୍ତୀ ଉପଲକ୍ଷେ

# ଅଭିନନ୍ଦନିକା

ଡ. ବିବେକାନନ୍ଦ ପାଣିଗ୍ରାହୀ

ସମ୍ପାଦକ

ଅଭିନନ୍ଦନିକା କମିଟି

# ସୂଚିପତ୍ର

# ଦୁଇ ପଦ

ପ୍ରତିଭାବାନ୍ ବ୍ୟକ୍ତିମାନେ ଚିରକାଳ ଦେଶ, ଜାତି ଓ ସମାଜର ଗର୍ବ ଓ ଗୌରବ । ଉତ୍ତର ପୁରୁଷ ସେମାନଙ୍କଠାରୁ ପାଇଥାଏ ପ୍ରେରଣା ଓ ଦିଗ୍‌ଦର୍ଶନ । କିନ୍ତୁ ଆମ ଦେଶରେ ବହୁ ବିରଳ ପ୍ରତିଭା ଯଥୋଚିତ ସମ୍ମାନରୁ ବହୁ ସମୟରେ ବଞ୍ଚିତ ହୋଇଥାଏ । ଅବହେଳାର ଅନ୍ଧକାର ମଧ୍ୟରେ ପ୍ରତିଭାଟିଏ ଲୋକଲୋଚନ ଅନ୍ତରାଳରେ ରହିଯାଏ । କୃତଘ୍ନ ଜାତି ବିସ୍ମରିଯାଏ ବ୍ୟକ୍ତି ବିଶେଷର ଅବଦାନ । ପୂଜ୍ୟ ପୂଜାରେ ବ୍ୟତିକ୍ରମ ସଭ୍ୟ ସମାଜ ପାଇଁ ଶୁଭଙ୍କର ନୁହେ । ଯେଉଁ ଜାତି ତା'ର କୃତି ପୁରୁଷମାନଙ୍କୁ ଚିହ୍ନେ ନାହିଁ, ସେ ଜାତିର ଭବିଷ୍ୟତ ନିଶ୍ଚିତଭାବେ ଅନ୍ଧକାରମୟ ଏଥିରେ ସନ୍ଦେହ ନାହିଁ ।

ଏହି ଅଭିନନ୍ଦନିକା ଘୁମୁସରର ଜଣେ ପ୍ରତିଷ୍ଠା ସମ୍ପନ୍ନ ସୁପରିଚିତ ବ୍ୟକ୍ତିତ୍ୱ ଶ୍ରୀଯୁକ୍ତ ମାଗୁଣି ଦାଶଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ମାତ୍ର । ବୟୋବୃଦ୍ଧ ସ୍ୱାଧୀନତା ସଂଗ୍ରାମୀ, ଭଂଜ ଗବେଷକ, ସୁଲେଖକ ମାଗୁଣି ବାବୁ ଓଡ଼ିଶା ସରକାର ତଥା ଭାରତ ସରକାରଙ୍କ ଦ୍ୱାରା ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବେ ସମ୍ମାନିତ । ତାଙ୍କ ବହୁମୁଖୀ ପ୍ରତିଭା ପ୍ରତି ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ତାଙ୍କ ୭୭ତମ ଜୟନ୍ତୀ ଉତ୍ସବରେ ତାଙ୍କ ଦୀର୍ଘ ନିରାମୟ ଜୀବନ କାମନା କରିବା ପାଇଁ ମାଗୁଣି ଦାଶ ଅଭିନନ୍ଦନିକା କମିଟି ତରଫରୁ ଚଳିତ ବର୍ଷ ଏକ ସ୍ମରଣୀୟ ପଦକ୍ଷେପ ନିଆଯାଇଛି । ଏହି ଉପଲକ୍ଷେ ପ୍ରସ୍ତୁତ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶନ ପାଇଁ ତାଙ୍କ ପ୍ରତିଭାମୁଗ୍ଧ ବନ୍ଧୁବାନ୍ଧବ, ସହକର୍ମୀ ମୋତେ ଅକୁଣ୍ଠିତ ସହଯୋଗ କରିବା ସଙ୍ଗେ ସଙ୍ଗେ ଉତ୍ସାହିତ କରିଛନ୍ତି । ସେମାନଙ୍କ ସହଯୋଗ ବିନା ଏ ଦୁରୂହ କାର୍ଯ୍ୟ ସମ୍ଭବ ହୋଇ ନ ଥାନ୍ତା । ଏହି ଅଭିନନ୍ଦନିକା ପାଇଁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଶତାଧିକ ପ୍ରବନ୍ଧ ମୋର ହସ୍ତଗତ ହୋଇଥିଲେ ବି ଅଭିନନ୍ଦନିକାର ସଂକ୍ଷିପ୍ତ କଳେବର ମଧ୍ୟରେ ସମସ୍ତ ପ୍ରବନ୍ଧକୁ ସ୍ଥାନିତ କରିଯାଇ ପାରି ନ ଥିବାରୁ ମୁଁ ଦୁଃଖ ପ୍ରକାଶ କରୁଛି । ପରିଶେଷରେ ଶୁଭେଚ୍ଛୁ ବନ୍ଧୁ ଓ ଅଭିନନ୍ଦନ କମିଟିର ସଭ୍ୟ ସଭ୍ୟାମାନଙ୍କୁ ମୁଁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

।।ଇତି।।

ବିବେକାନନ୍ଦ ପାଣିଗ୍ରାହୀ

ତା - ୧-୧୨-୯୫

ଅଭିନନ୍ଦନ କମିଟିର ସଭ୍ୟ ବୃନ୍ଦ :

ଡ଼ଃ ଦଣ୍ଡପାଣି ବେହେରା

ଡ଼ଃ ପ୍ରଫୁଲ୍ଲ କୁମାର ଦାଶ

ଡ଼ଃ ପ୍ରଦୀପ କୁମାର ପଟ୍ଟନାୟକ

ଡ଼ଃ ଭି. ରାଜେନ୍ଦ୍ର ରାଜୁ

ଅଧ୍ୟାପକ ଶିରୀଷ କୁମାର ଷଡ଼ଙ୍ଗୀ

# ସ୍ୱାଧୀନତା ସଂଗ୍ରାମୀ
# ଶ୍ରୀ ମାଗୁଣି ଦାଶ



ଜନ୍ମ ପନ୍ଦର୍ ଜାନୁୟାରୀ ୧୯୬୦

ପବନ ପୌଷ ଶାମ୍ବ ଦଶମୀ

# ମୋର ସଂକ୍ଷିପ୍ତ ଆତ୍ମକଥା

ଶ୍ରୀ ମାଗୁଣି ଦାଶ

**ବଂଶ ପରିଚୟ, ଜନ୍ମ ଓ ବାଲ୍ୟଜୀବନ :—**

ମୋର ଜନ୍ମ ୧୯୧୦ ମସିହା ଜାନୁଆରୀ ପହିଲା, ପବିତ୍ର ପୌଷ ଶାମ୍ବଦଶମୀ ତିଥିରେ ଗଞ୍ଜାମ ଜିଲ୍ଲା ଦୁଗୁସର ଅନ୍ତର୍ଗତ କଟନ୍ଦାଟପୁର ଶାସନରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ହୋଇଥିଲା । ମୋର ପିତାଙ୍କ ନାମ ଅନନ୍ତ ଦାଶ ଓ ମାତାଙ୍କ ନାମ ରେବତୀ ଦେବୀ । ମୋର ପିତା ଜଣେ ସଂସ୍କୃତ ପଣ୍ଡିତ ଥିଲେ ।

ମୋର ଜନ୍ମ ପୂର୍ବରୁ ମୋର ଗୋଟିଏ ଭାଇ ଓ ଗୋଟିଏ ଭଉଣୀ ଅକାଳରେ ଇହଲୀଳା ସମ୍ବରଣ କରିଥିବାରୁ ମୋର ମାତା ଓ ପିତା ଅତ୍ୟନ୍ତ ଚିନ୍ତିତ ଥିଲେ । ମୋର ଜନ୍ମ ହେବା ମାତ୍ରେ ମୋର ନେଟଠେଇ (ବଡ଼ମା) ମତେ ସୂର୍ଯ୍ୟଙ୍କ ଉଦୟରେ ଟେକାଟେଇ ସାତଘରୁ ସାତ ଖଣ୍ଡ କନା ଓ ସାତ ପଲା ଟେକଲ ମାଗିଆଣି ମୋର ବ୍ୟବହାର କରାଇଥିଲେ । ଏହା କରିବାର ଉଦ୍ଦେଶ୍ୟ ହେଉଛି ସାତ ଘରର ଆଶୀର୍ବାଦ ମୋ ଉପରେ ପଡ଼ିବ ଏବଂ ମୁଁ ଦୀର୍ଘଜୀବୀ ହେବି । ସେଥିପାଇଁ ମୋର ନାମ ରଖିଥିଲେ ମାଗୁଣି ।

ମୋର ବଂଶର ପୂର୍ବ ପୁରୁଷମାନଙ୍କୁ ପୁରୀ ନିକଟ କେଉଁ ଶାସନରୁ ସୁମ୍ବସର ରାଜା ଆଣି ଅବସ୍ଥାନ କରାଇଥିଲେ । ଆମର ବଂଶଧରମାନେ ଜଗନ୍ନାଥ ପ୍ରସାଦରେ ଗଡ଼ ନିର୍ମାଣ କରି ରହିଥିବା ଜଗନ୍ନାଥ ମହାପ୍ରଭୁଙ୍କର କୁଳ ପୁରୋହିତ ଥିଲେ । ସେହି ହିସାବରେ ଜଗନ୍ନାଥ ପ୍ରସାଦରେ ଭଞ୍ଜରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ଦଧିବାମନ ସ୍ୱାମୀ ମନ୍ଦିର ଓ ରଘୁନାଥ ସ୍ୱାମୀ ମଠର ପୌରୋହିତ୍ୟ କାର୍ଯ୍ୟ ମୋର ବଂଶଧରମାନେ ଏ ପର୍ଯ୍ୟନ୍ତ ଚଳାଇ ଆସୁଛନ୍ତି ।

ଘୁମୁସରର ରାଜା ଲକ୍ଷ୍ମଣ ଭଞ୍ଜ ମୋର ପୂର୍ବ ପୁରୁଷମାନଙ୍କୁ ଜଗନ୍ନାଥପୁର ବ୍ରାହ୍ମଣ ଶାସନଟି ଦାନ କରିଥିଲେ । ସେଥିପାଇଁ ଆମ ପରିବାରଟି ମକଦମ ଘର ନାମରେ ପ୍ରଖ୍ୟାତ ଲାଭ କରିଥିଲା । ବ୍ରାହ୍ମଣ ଶାସନର ମୁଖିଆଙ୍କୁ ମକଦମ କହନ୍ତି । ପ୍ରତ୍ୟେକ କାର୍ଯ୍ୟରେ ମକଦମଙ୍କୁ ଆଗେ ଡ଼ାକାପଡ଼େ । ସେତେବେଳେ ମକଦମ ଘର ଲୋକେ ଲୋକଙ୍କର ଖାଇ ଖାଉଥିଲେ । ନ୍ୟାୟ ଅନ୍ୟାୟ ନିଷ୍ପତ୍ତି କରିବାରେ ଏବଂ ଜାନିଯାତ୍ରା ଓ ଉତ୍ସବମାନଙ୍କରେ ମକଦମଙ୍କର ପ୍ରଥମ ଆବଶ୍ୟକତା ପଡୁଥିଲା । ସମସ୍ତେ ମକଦମଙ୍କ କଥା ମାନି ଚଳୁଥିଲେ ।

ମୋର ବଂଶବୃକ୍ଷ




ଆମର ଗୋତ୍ର ଦେବଭରଦ୍ୱାଜ ।

ଶିକ୍ଷା —

ମୋର ବାଲ୍ୟ ଶିକ୍ଷା ପାଇଁ ଆମଗାଁରେ ବିଦ୍ୟାଳୟ ନ ଥିବାରୁ ଜଗନ୍ନାଥ ପ୍ରସାଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ମୋର ଶିକ୍ଷା ହୋଇଥିଲା । ସେହି ବିଦ୍ୟାଳୟରେ ମୋର ଦଦେଇ (ବଡ଼ବାପା) ଲୋକନାଥ ଦାଶ ପ୍ରଧାନ ଶିକ୍ଷକ ବା ମେନେଜର ଥିଲେ । ସେ ମୋର ଶିକ୍ଷା ପାଇଁ ବିଶେଷ ଧ୍ୟାନ ଦେଉଥିଲେ । ବାଲ୍ୟ ଜୀବନରେ ମୋର ଗୋଟିଏ କଥା ମୋର ଜୀବନରେ ଅଲିଭା ଦାଗ ହୋଇ ରହିଛି । ଲୋକେ ସିଗାରେଟ୍ ଖାଇବା ମୁଁ ଦେଖିଥିଲି । ମୁଁ ଥରେ କାଗଜକୁ ସିଗାରେଟ୍ ପରି କରି ଖାଉଥିବା ବେଳେ ମୋର ଜଣେ ସହାଧ୍ୟାୟୀ ମୋର ଦଦେଇଙ୍କୁ ଯାଇ କହି ଦେଇଥିଲା । ଫଳରେ ଦଦେଇ ମତେ ବହୁତ ବାଡେଇଥିଲେ । ଯାହା ଫଳରେ ମୋର ଜୀବନରେ ବିଡ଼ି ସିଗାରେଟ୍

ପେଗ ବ ସଙ୍ଗରେ, ଅଫିମ ଓ ମଦ ଇତ୍ୟାଦି ମୁଁ ସ୍ପର୍ଶ କରିବା ଆଉ ହୋଇନଥିଲା । ଏବେ ମଧ୍ୟ ବିଡ଼ି, ସିଗାରେଟ୍ ଦେଖିଲେ ବଦେଇଙ୍କ ମାଡ଼ ମନେ ପଡ଼ିଯାଏ ।

ମୁଁ ଜଗନ୍ନାଥ ପ୍ରସାଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ କ୍ଲାସ୍ ଫୋରର ସହିତ ପ୍ରଥମ ଶ୍ରେଣୀ ଶିକ୍ଷା ଶେଷ କଲି ଉଚ୍ଚ ଶିକ୍ଷା ପାଇବା ପାଇଁ ଇଚ୍ଛା କରିଥିଲି । କିନ୍ତୁ ମୋର ଦୁର୍ଭାଗ୍ୟକୁ ଆମ ଗାଁର ଆଖ ପାଖ ୨୦।୩୦ ମାଇଲ ମଧ୍ୟରେ ଉଚ୍ଚ ଶିକ୍ଷା ପାଇଁ ବିଦ୍ୟାଳୟଟିଏ ନଥିଲା । କେବଳ ରମ୍ଭଲେଣ୍ଡାରେ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥିଲା । ସେଠାରେ ପଢ଼ାଇବା ବ୍ୟୟବହୁଳ ଯୋଗୁଁ ଆମର ସମ୍ଭବ ନଥିଲା । ମୋର ମାମୁଁ ଘର ଗାଁ ଖଣ୍ଡିସ୍ବରପୁରରେ ଗୋଟିଏ ହାୟାର ଏଲିମେଣ୍ଟେରୀ ବିଦ୍ୟାଳୟ ଥିଲା । ଅଞ୍ଚଳସାରାର ପିଲା ଯାଇ ସେହି ବିଦ୍ୟାଳୟରେ ଭର୍ତ୍ତି ହୁଅନ୍ତି । ମୁଁ ସେଠାରେ ପଢ଼ିବା ପାଇଁ ମୋର ମା (ବୋଉ) ମୋର ଅଜାଙ୍କୁ କହିଲେ । ଅଜା ରାଜି ହେଲେ ମଧ୍ୟ ମୋର ମାମୁଁ ଓ ମାଇଁ ବିରୋଧ କଲେ । ଯାହେଉ ଅଜାଙ୍କ କଥା ରହିଲା । ମୁଁ ୧୯୩୨ ମସିହାରେ ସେହି ବିଦ୍ୟାଳୟରେ ଯୋଗଦେଲି । ମୁଁ କ୍ଲାସରେ କେତେବେଳେ ପ୍ରଥମ ତ କେତେବେଳେ ୨ୟ ହେଉଥିଲି । ମୋର ସହାଧ୍ୟାୟୀ ଉପେନ୍ଦ୍ରନାଥ ମହାରଣା ସହିତ ମୋର ପ୍ରତିଦ୍ୱନ୍ଦ୍ୱିତା ହେଉଥିଲା । ମୋର ଶିକ୍ଷକମାନଙ୍କ ମଧ୍ୟରୁ ପ୍ରଧାନ ଶିକ୍ଷକ କୈଳାଶଚନ୍ଦ୍ର ଦାଶ, ସହକାରୀ ଶିକ୍ଷକ ମହେଶ୍ୱର ପାଢ଼ି, ବାଞ୍ଛାନିଧି ଗଉଡ଼ ଏବଂ ପରେ ବଦଳି ହୋଇ ଆସିଥିବା କାଶୀନାଥ ପଣ୍ଡା ଶିକ୍ଷକ ମତେ ଭଲ ପାଉଥିଲେ । ସେମାନେ ମୋର ପଢ଼ାପଢ଼ି ପ୍ରତି ବିଶେଷ ଧ୍ୟାନ ଦେଉଥିଲେ ।

ସ୍କୁଲରେ ସ୍ୱାସ୍ଥ୍ୟ ସପ୍ତାହ, ଶିକ୍ଷା ସପ୍ତାହ ଇତ୍ୟାଦି ପାଳିତ ହେଉଥାଏ । ମୁଁ କବିତା ପ୍ରତିଯୋଗିତା, ପ୍ରବନ୍ଧ ପ୍ରତିଯୋଗିତା ଓ ସେଥିପାଇଁ ହେଉଥିବା ଭିନ୍ନ ଭିନ୍ନ ପ୍ରତିଯୋଗିତାରେ ଭାଗ ନେଇ ପୁରସ୍କୃତ ହେଉଥାଏ ।

ଗୋପବନ୍ଧୁ ଶ୍ରାଦ୍ଧ ଦିବସ, ମଧୁ ଜୟନ୍ତୀ ଇତ୍ୟାଦି ପାଳିତ ହେଉଥାଏ । ମୁଁ ଭାଷଣ ଦେଉଥାଏ । ଶିକ୍ଷକମାନେ ମତେ ଉତ୍ସାହିତ କରୁଥିଲେ ।

୧୯୩୭ ମସିହାରେ ମୁଁ ପାଠପଢ଼ା ଛାଡ଼ି, କଂଗ୍ରେସରେ ଯୋଗ ଦେଲି । ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ କଥା । ଶୁଣି ମୁଁ ସେ ଆଡ଼କୁ ଆକୃଷ୍ଟ ହୋଇ ପଡ଼ିଥିଲି ।

## ଶିକ୍ଷକତା—

ପାଠପଢ଼ା ଛାଡ଼ି ଘରେ ବସି ରହିବାରୁ ବାପା ମା'ଙ୍କର ଉପରେ ବୋଝ ହେଲି । ସେଥି ପାଇଁ ଆମ ଗାଁ ପାଖ ଗଉଡ଼ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଜଣେ [illegible] ଶିକ୍ଷକ ରୂପେ ମାସିକ ସାଢ଼େ ସାତ ଟଙ୍କା ଦରମାରେ ଯୋଗ ଦେଲି । ସେତେବେଳେ ଶିକ୍ଷକମାନଙ୍କ ଦରମା ମାସିକ ନଅ ଟଙ୍କା ଥିଲା । ସାହାଯ୍ୟ ପ୍ରାପ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ବା ମେନେଜର ଲକ୍ଷ୍ମଣ ସାହୁ ମୋ ଦରମାରୁ ଅଧା ନେଇ ମତେ ଅଧା ଦେଉଥିଲେ । ପ୍ରାୟ ଦୁଇ ବର୍ଷ ଶିକ୍ଷକ କାର୍ଯ୍ୟ କରିବା ପରେ ଶିକ୍ଷକତା ଛାଡ଼ିଦେଇ ଆୟୁର୍ବେଦ ଶିକ୍ଷା ପାଇଁ ଚିକିତ୍ସା କରିବା ପାଇଁ ମନ ବଳାଇଲି ।

## ଆୟୁର୍ବେଦ ଶିକ୍ଷା ଓ ଚିକିତ୍ସା—

ବେଲଗୁଣ୍ଠାର ସ୍ୱନାମଧନ୍ୟ ପଣ୍ଡିତ କବିରାଜ ବ୍ରଜବନ୍ଧୁ ତ୍ରିପାଠୀଙ୍କ ଦ୍ୱାରା ପୁରୁଷର ଆୟୁର୍ବେଦ ପ୍ରଚାର ସମିତି ନାମରେ ଗୋଟିଏ ଆୟୁର୍ବେଦ ବିଦ୍ୟାଳୟ ଖୋଲା ଯାଇଥିଲା । ମୁଁ ସେଥିରେ ଶିକ୍ଷା ଲାଭ କରି ଆୟୁର୍ବେଦ ଶାସ୍ତ୍ରୀ ଉପାଧି ଲାଭ କରିଥିଲି । ମୋ ସହିତ ଆମ ଗାଁର ଅନନ୍ତରାମ କର ମଧ୍ୟ ଶିକ୍ଷା ଲାଭ କରିଥିଲେ । ଉଭୟେ ଜଗନ୍ନାଥ ପ୍ରସାଦରେ ଗୋପବନ୍ଧୁ ଭୈଷଜ୍ୟ ଭବନ ନାମରେ ଗୋଟିଏ ଔଷଧାଳୟ ଖୋଲି ଚିକିତ୍ସା ଆରମ୍ଭ କରିଥିଲୁ । ବହୁତ ରୋଗୀଙ୍କୁ ଭଲ କଲୁ, ମୁଁ ପଣ୍ଡିତଙ୍କ ନିର୍ଦ୍ଦେଶ କ୍ରମେ ୧୯୪୦ ମସିହାରେ ରସଲକୋଣ୍ଡା ଆସି ତାଙ୍କର ଗୋଟିଏ ଔଷଧାଳୟରେ କାର୍ଯ୍ୟକଲି, କେତେ ଦିନ ପରେ ସେ ଔଷଧାଳୟଟି ବନ୍ଦ କରି ଦେବାରୁ ମୁଁ ସ୍ୱତନ୍ତ୍ର ଭାବେ ସେଠାରେ ଔଷଧାଳୟଟିଏ ଖୋଲି ଚିକିତ୍ସା କରି ରୋଗୀଙ୍କୁ ଆରୋଗ୍ୟ କଲି । ଏହା ୧୯୫୪ ମସିହା ଭଞ୍ଜନଗର ଛାଡ଼ିବା ପର୍ଯ୍ୟନ୍ତ ଚାଲିଥିଲା ।

## ରାଜନୀତିରେ ଯୋଗଦାନ—

୧୯୩୭ ମସିହାରେ ଓଡ଼ିଶା ବିଧାନସଭା ପାଇଁ ପ୍ରଥମ ନିର୍ବାଚନ ହେଲା । ଆମ ଅଞ୍ଚଳରୁ ବିଶ୍ୱନାଥ ଦାଶ ବିଧାନସଭା ପାଇଁ ନିର୍ବାଚନରେ ଲଢ଼ି ନିର୍ବାଚିତ ହେଲେ । ମୁଁ ତାଙ୍କ ପାଇଁ ପ୍ରଚୁର କାମ କରିଥିଲି । ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ସେହି ବର୍ଷ ସେ ଆମ ଅଞ୍ଚଳକୁ ଗସ୍ତରେ ଆସି ଅଭ୍ୟର୍ଥନା ସଭାରେ ଯୋଗ ଦେଲେ । ତାଙ୍କ ସହିତ ନିରଞ୍ଜନ ପଟ୍ଟନାୟକ ଓ ସ୍ୱନାମଧନ୍ୟ ବକ୍ତା ମୋହନ ଦାଶ ଆସିଥିଲେ ।

ସମୁଦାୟ ୨୦ ଖଣ୍ଡ ବହି ଓ ୨୦୦ରୁ ଅଧିକ ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇସାରିଲାଣି । ତା ଛଡ଼ା ରେଡ଼ିଓ ଓ ଦୂରଦର୍ଶନରେ ମଧ୍ୟ କେତେକ ଲେଖା ପ୍ରଚାରିତ ହୋଇଛି ଏବଂ ସେଥିପାଇଁ ପ୍ରଶଂସିତ ହୋଇଛନ୍ତି ।

**ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମରଣିକା ସଂକଳନ ଓ ପ୍ରକାଶ—**

ଗଞ୍ଜାମ ଜିଲ୍ଲାର ସମସ୍ତ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଗୋଟିଏ ଜୀବନୀ ସମ୍ବଳିତ ସ୍ମରଣିକା ବହୁ ପରିଶ୍ରମ କରି ସଂଗ୍ରହ କରି ପ୍ରକାଶ କରିଅଛନ୍ତି । ଏଥିରେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ସହିତ ଫଟୋ ମଧ୍ୟ ସଂଗ୍ରହ କରି ଦେଇଛନ୍ତି । ଏପରି ଉଦ୍ୟମ ସମଗ୍ର ଓଡ଼ିଶାରେ ପ୍ରଥମ । ଅନ୍ୟ କୌଣସି ଜିଲ୍ଲାରେ ଏପରି କରାଯାଇନାହିଁ । ଉକ୍ତ ସ୍ମରଣିକା ବହିଟି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଉନ୍ମୋଚନ କରି ପ୍ରଶଂସା କରିଥିଲେ ।

**ଓଡ଼ିଶାର ଗଜପତି ମହାରାଜା ଦିବ୍ୟ ସିଂହଦେବଙ୍କ ଦ୍ୱାରା ବହି ଉନ୍ମୋଚନ ଓ ଶୁଭେଚ୍ଛା ପ୍ରଦାନ—**

ମୋ ଦ୍ୱାରା ଲିଖିତ ଉପେନ୍ଦ୍ରଭଞ୍ଜଙ୍କ ଜୀବନୀ ପୁସ୍ତକଟି ପୁରୀର ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା ଏବଂ ମତେ ଶୁଭେଚ୍ଛା ଜ୍ଞାପନ କରିଥିଲେ ।

**ଅଧ୍ୟାପକମାନଙ୍କୁ ପି ଏଚ୍. ଡି. କରିବାରେ ତଥ୍ୟ ଓ ଉପାଦାନ ସାହାଯ୍ୟ—**

ଅଧ୍ୟାପକମାନଙ୍କ ମଧ୍ୟରୁ ଡ଼ଃ ଶ୍ରୀ ଶଙ୍କର ନାରାୟଣ ପାତ୍ର, ଡ଼ଃ ଚକ୍ରପାଣି ବେହେରା, ଏବଂ ଡ଼. ବିଜୟକୁମାର ପଟ୍ଟନାୟକଙ୍କୁ ପି. ଏଚ୍. ଡ଼ି. କରିବାରେ ଆବଶ୍ୟକୀୟ ତଥ୍ୟ ଓ ଉପାଦାନ ସାହାଯ୍ୟ କରିଅଛି ।

**ନୟାଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନରେ ସହଯୋଗ—**

ପଡ଼ୋଶୀ ରାଜ୍ୟ ନୟାଗଡ଼ ଗଡ଼ଜାତରେ ଅଶାନ୍ତିରେ ଦେଇ ପ୍ରଜାମଣ୍ଡଳ ଆନ୍ଦୋଳନ ହୋଇଥିଲା, ପ୍ରଜାମଣ୍ଡଳର କର୍ମୀମାନେ ଆସି ଗଞ୍ଜାମ ସୀମା କୃଷ୍ଣାପଡ଼ା ଗ୍ରାମଠାରେ ସଭାସମିତି କରି ସେଠାରୁ ଆନ୍ଦୋଳନର କାର୍ଯ୍ୟକ୍ରମ

ସ୍ଥିର କରୁଥିଲେ । ପ୍ରଜାମଣ୍ଡଳର ସମସ୍ତ ସଭ୍ୟ, ସମିତରେ ଯୋଗଦେଇ ଆନ୍ଦୋଳନକୁ ସଫଳ କରିବା ପାଇଁ ସାହାଯ୍ୟ ସହଯୋଗ କରୁଥିଲେ । ଫଳରେ ପଞ୍ଚଭୂତଠାରେ ମୁଁ କରିଥିବା ବ୍ୟକ୍ତିଗତ ସତ୍ୟାଗ୍ରହ ସଭାରେ ହଜାର ହଜାର ନିସ୍ବାଗଡ଼ ବନ୍ଧ ଯୋଗଦେଇ ଆମକୁ ଉତ୍ସାହିତ କରିଥିଲେ ।

**ଅବସର ପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ସଭାପତି ଦାୟିତ୍ୱ ଗ୍ରହଣ—**

ଓଡ଼ିଶା ରାଜ୍ୟ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ଭଞ୍ଜନଗର ଶାଖାର ସଭାପତି ଭାବରେ ବହୁତ ଦିନ ରହି, ଅବସରପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କ ଆପତ୍ତି, ଅଭିଯୋଗ, ଓ ଦାବୀ ସରକାରଙ୍କୁ ଜଣାଇ, ପ୍ରତିକାର କରିବା ସଙ୍ଗେ ସଙ୍ଗେ ସ୍ଥାନୀୟ ବ୍ୟାଙ୍କରେ ସମୟେ ସମୟେ ଉପୁଜିଥିବା ସମସ୍ୟାର ଆପୋଷ ସମାଧାନ କରିବା ପାଇଁ ଉଦ୍ୟମ କରିଆସିଛୁ ।

**ଆଞ୍ଚଳିକ ମହାବିଦ୍ୟାଳୟକୁ ସାହାଯ୍ୟ ଓ ପରିଚାଳନା କମିଟିର ସଦସ୍ୟ ମନୋନୀତ—**

ନିଜ ଗ୍ରାମ ଜଗନ୍ନାଥ ପ୍ରସାଦ, ଆଞ୍ଚଳିକ ମହାବିଦ୍ୟାଳୟକୁ ଆବଶ୍ୟକ ସଂଖ୍ୟକ ପାଠାଗାର ବହି ଦାନ କରିବା ସଙ୍ଗେ ସଙ୍ଗେ ଚଉକି, ଆଲମାରୀ ଓ ଆର୍ଥିକ ସାହାଯ୍ୟ ଦାନ କରିଅଛୁ । ମହାବିଦ୍ୟାଳୟର ନିଜସ୍ୱ ଘର ପାଇଁ କୋଠା ଜାଗାରେ ଥିବା ମୋର ଅଂଶ ଦାନ କରିଅଛୁ । ମହାବିଦ୍ୟାଳୟ ପରିଚାଳନା କମିଟିର ଜଣେ ସ୍ଥାୟୀ ସଦସ୍ୟ ଭାବରେ ମନୋନୀତ ହୋଇଅଛୁ । ମହାବିଦ୍ୟାଳୟକୁ ଅଗ୍ରଗତି କରି ଚାଲିଛୁ ।

**ଅନ୍ୟାନ୍ୟ କଲେଜ, ହାଇସ୍କୁଲ ଓ ସାଧାରଣ ପାଠାଗାରମାନଙ୍କୁ ପାଠାଗାର ବହି ଦାନ—**

ଯଶିଂସ୍ୱବଡ଼ପୁର ଆଞ୍ଚଳିକ ମହାବିଦ୍ୟାଳୟ, ବେଲଗୁଣ୍ଠା ମହାବିଦ୍ୟାଳୟ, ଡାରସିଙ୍ଗି ଉଚ୍ଚ ଇଂରାଜୀ ବିଦ୍ୟାଳୟ, ଯଦୁମଣି ସାହିତ୍ୟ ସଂସଦ ପାଠାଗାର—ଉଦୟପୁର (ପୁରୀ) ସବୁଲେଇ ପାଠାଗାର (ଫୁଲବାଣୀ) ଶ୍ରୋତସ୍ୱିନୀ ପାଠାଗାର, ଅଟ୍ଟରେଶ୍ୱର (କଟକ) ଇତ୍ୟାଦି ଅନୁଷ୍ଠାନକୁ ପାଠାଗାର

ବହି ଦାନକରି ପାଠାଗାରର ଅନ୍ତର୍ଭୁକ୍ତିରେ ସହାୟକ ହୋଇଅଛି । ଏବେ ମଧ୍ୟ କୌଣସି ଅନୁଷ୍ଠାନ ଆବେଦନ କଲେ ବହି ଦାନ କରିବା ପାଇଁ ଯୋଜନା ରହିଛି ।

**ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଜେଲ ଯାଇଥିବାରୁ ତାଙ୍କରୁ ବାନ୍ତନ —**

ପ୍ରଥମ ଥର ସ୍ୱାଧୀନତା ସଂଗ୍ରାମ ବ୍ୟକ୍ତିଗତ ସତ୍ୟାଗ୍ରହରେ ଯୋଗ ଦେଇ ଜେଲ ଦଣ୍ଡ ଭୋଗିବାରୁ ମୋ ଗ୍ରାମର ମୁଖିଅମାନଙ୍କ ଦ୍ୱାରା ଜାତିଚ୍ୟୁତ ହୋଇଥିଲି । ମୋତେ କୌଣସି ହାଡ଼ି, ବାରିକ, ଧୋବାଙ୍କୁ ଡ଼ାକ ଦେଉନଥିଲେ । ପରେ ସେମାନେ ନିଜର ଭୁଲ ବୁଝି ପାରି ଆଉ ବାରଣ କରିବାକୁ ସାହସ କଲେ ନାହିଁ ।

**ଭଞ୍ଜ ସାହିତ୍ୟ ପରିଷଦର ସଂପାଦକ ଦାୟିତ୍ୱ —**

୧୯୪୫ ମସିହାରେ ଭଞ୍ଜ ସାହିତ୍ୟ ପରିଷଦ ଗଠନ କରାଗଲା । ମୁଁ ପ୍ରଥମେ ଏହି ଅନୁଷ୍ଠାନର ସଂପାଦକ ଦାୟିତ୍ୱ ବହନ କରିଥିଲି । ମୁଁ ଉପାଦାନ ଓ ତଥ୍ୟ ଯୋଗାଇ ଦେଉଥିବାରୁ ଦେବେନ୍ଦ୍ର କୁମାର ସିଂହ 'ଭଞ୍ଜନଗର' ତଥ୍ୟ ମୂଳକ ନାଟକଟି ଲେଖି ପ୍ରକାଶ କରିଥିଲେ । ରସଲକୋଣ୍ଡର ନାମ ପରିବର୍ତ୍ତନ କରି ଭଞ୍ଜନଗର ନାମକରଣ କରିବାରେ ମୋର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ମୁଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡ଼ଃ ହରେକୃଷ୍ଣ ମହତାବଙ୍କୁ ବାରଂବାର ସାକ୍ଷାତ କରି ଆଲୋଚନା କରି ତାଙ୍କର ଅତ୍ୟାବଶ୍ୟକ ପ୍ରଶ୍ନର ଉତ୍ତର ଦେଇ ସନ୍ତୁଷ୍ଟ କରିଥିବାରୁ ସେ ନାମ ପରିବର୍ତ୍ତନ କରିବାକୁ ସମ୍ମତ ହେଲେ । ୧୯୫୩ ମସିହାରେ ନାମ ପରିବର୍ତ୍ତନ ହେଲା । ମୋ ସମୟରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ପୂର୍ଣ୍ଣାବୟବ ପ୍ରସ୍ତରମୂର୍ତ୍ତିଟି ନିର୍ମିତ ହୋଇଥିଲା । ଏଥିପାଇଁ ମୁଁ ଝଙ୍କାର ପତ୍ରିକା ଦ୍ୱାରା ସମାଲୋଚିତ ହୋଇଥିଲି । ଗୁମୁସର ଗାଁ ଗହଳରୁ ବହୁ ତାଳପତ୍ର ପୋଥି, ପ୍ରାଚୀନ ପୁସ୍ତକ ହସ୍ତଲିଖିତ ସଂଗ୍ରହ କରି ଭଞ୍ଜ ସାହିତ୍ୟ ପରିଷଦରେ ଜମା ଦେଇଥିଲି । ମୋ ସମୟରେ ପରିଷଦ ବୈଠକରେ ମାଘ ବସନ୍ତ ପଞ୍ଚମୀ ଉପେନ୍ଦ୍ରଭଞ୍ଜଙ୍କ ଜନ୍ମ ଦିନ ବୋଲି ସ୍ଥିର କରି ସେହିଦିନ ଠାରୁ ଜୟନ୍ତୀ ପାଳିତ ହୋଇ ଆସୁଅଛି । ମୁଁ ବିଦେଶ ଯାଇ ରହିଯିବାରୁ ୧୯୫୪ ମସିହା ପର୍ଯ୍ୟନ୍ତ ପରିଷଦର ସଂପାଦକ ଦାୟିତ୍ୱ ତୁଲାଇଥିଲି ।

### ଚାକିରିଆ ଜୀବନ—

ମୁଁ ୧୯୫୪ ମସିହାରେ ଓଡ଼ିଶା ସରକାରଙ୍କ ଲୋକ ସଂପର୍କ ବିଭାଗରେ ଜଣେ ବେସରକାରୀ ପ୍ରଚାରକର୍ମୀ ଭାବରେ ଯୋଗ ଦେଇଥିଲି । ମୋର ଭାଗ୍ୟକୁ ଉକ୍ତ ବିଭାଗଟି ପୂର୍ଣ୍ଣ ସରକାରୀ ହେବା ଫଳରେ ମୁଁ ଜିଲ୍ଲା ଲୋକ ସଂପର୍କ ଅଧିକାରୀ ପର୍ଯ୍ୟନ୍ତ ପଦୋନ୍ନତି ପାଇ ୧୯୬୭ ମସିହାରେ ଅବସର ଗ୍ରହଣ କଲି । ଚାକିରୀ କାଳ ମଧ୍ୟରେ ମୁଁ ଉପରିସ୍ଥ କର୍ମଚାରୀମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲି । ମୁଁ କର୍ତ୍ତବ୍ୟରେ କେବେ ଅବହେଳା କରି ନଥିଲି ।

### ମାନପତ୍ର ଓ ଉପାୟନ ପ୍ରାପ୍ତି—

ଭାରତର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ମୁଁ ଦୁଇ ଥର ଜେଲ ଦଣ୍ଡ ପାଇଅଛି । ଜେଲରେ ଲାଠି ମାଡ଼ ହେବା ଫଳରେ ମୋର ଖାଇବା ହାତର ମଝି ଆଙ୍ଗୁଠିଟି ଭାଙ୍ଗି ଯାଇଥିଲା । ମୁଁ ଭାରତ ସରକାରଙ୍କଠାରୁ ତାମ୍ରପତ୍ର, ଓଡ଼ିଶା ସରକାରଙ୍କଠାରୁ ମାନପତ୍ର ଓ ଭାରତଛାଡ଼ ଆନ୍ଦୋଳନର ସ୍ୱର୍ଣ୍ଣ ଜୟନ୍ତୀ ପାଳନ ଉପଲକ୍ଷେ ଓଡ଼ିଶା ସରକାରଙ୍କଠାରୁ ମାନପତ୍ର ଓ ଉପାୟନ ପାଇଅଛି ।

ମୁଁ ଜଣେ ସାହିତ୍ୟିକ ଭାବରେ କଳିଙ୍ଗ ଭାରତୀ ଅନୁଷ୍ଠାନ ପକ୍ଷରୁ ମାନପତ୍ର ଓ ଅର୍ଥ ପାଇ ସମ୍ମାନିତ ହୋଇଅଛି । ଯଦୁମଣି ସାହିତ୍ୟ ସଂସଦଙ୍କରୁ ମାନପତ୍ର ଓ ଉପାୟନ ଜ୍ୟୋତିର୍ଗବେଷଣା ପରିଷଦ ପକ୍ଷରୁ ମାନପତ୍ର ଓ ରୌପ୍ୟପଦକ, ଚନ୍ଦ୍ରା ଓ ଚେତନା ଏବଂ ପ୍ରଗତି ସାହିତ୍ୟ ସଂସଦ ପକ୍ଷରୁ ମାନପତ୍ର ପ୍ରାପ୍ତ ହୋଇ ସମ୍ମାନିତ ହୋଇଅଛି ।

ମୁଁ ଜୀବନରେ ମହାତ୍ମା ଗାନ୍ଧିଙ୍କୁ ଦୁଇଥର ଦର୍ଶନ କରିବା ସୁଯୋଗପାଇଛି । ଥରେ ଡ଼େଲାଙ୍ଗ ସମ୍ମିଳନୀରେ ଓ ଅନ୍ୟଥର ବ୍ରହ୍ମପୁର ରେଲଷ୍ଟେସନଠାରେ ରେଲରେ ମାଡ୍ରାସ ଯିବାବେଳେ । ନେତାଜି ସୁଭାଷଚନ୍ଦ୍ର ବୋଷଙ୍କୁ ଥରେ ବ୍ରହ୍ମପୁର ମ୍ୟୁନିସିପାଲିଟି ସଭାରେ ଦର୍ଶନ ଲାଭ କରି ଧନ୍ୟ ହୋଇଅଛି । ତା ଛଡ଼ା ଜବାହରଲାଲ ନେହରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଆବୁ କାଲମ ଆଜାଦ, ଇନ୍ଦିରା ଗାନ୍ଧୀ, ରାଜୀବ ଗାନ୍ଧି ପ୍ରଭୃତିଙ୍କୁ ଦର୍ଶନ କରି ମୋର ଜୀବନକୁ ସାର୍ଥକ କରିଅଛି ।



# ବିଦ୍ୱାନ ଲେଖକ ପ୍ରକାଶକ

ଡକ୍ଟର ପ୍ରଦୀପ ପଟ୍ଟନାୟକ

ଶ୍ରୀଯୁକ୍ତ ମାଗୁଣି ଦାସଙ୍କ ସହ ମୋର ସମ୍ପର୍କ ଆରମ୍ଭ ହୁଏ ପାର୍ଚ୍ଚ ୧୫ ବର୍ଷ ତଳୁ । ଏହା ପୂର୍ବରୁ ତାଙ୍କର ବହୁ ଲେଖା ମୁଁ ବିଭିନ୍ନ ପତ୍ରପତ୍ରିକାରୁ ପଢିଥିଲି । ୧୯୭୮ ମସିହା କଥା, ଯେତେବେଳେ ଭଞ୍ଜନଗର କଲେଜରେ ବି.ଏ ପଢୁଥିଲି । ସେତେବେଳେ ମୋର କେଉଁ ଲେଖି ଜ୍ଞାନ୍ ଯୋଗ ହୋଇଥାଏ । ବହୁ ଖବର କାଗଜ ଓ ସାହିତ୍ୟ ପତ୍ରପତ୍ରିକାରେ ମୋର ବହୁ ଲେଖା ପ୍ରକାଶ ପାଉଥିଲା ଏବଂ ଆକାଶବାଣୀ କଟକ ଓ ଜୟପୁର କେନ୍ଦ୍ରରୁ ମଧ୍ୟ ବହୁ ଲେଖା ପ୍ରସାରିତ ହେଉଥାଏ । ଶ୍ରୀଯୁକ୍ତ ଦାସ ମୋର କିଛୁ ଲେଖା ପଢିଥିଲେ ଏବଂ ଶୁଣିଥିଲେ । ମୋର ଠିକ୍ ମନେ ପଡୁନାହିଁ ମୋର ସେତେବେଳକୁ କେତୋଟି ଛପା ହୋଇଲଣି । ୧୯୮୩ ମସିହାରେ ମୁଁ ଏକ ଗଳ୍ପପତ୍ରିକା ବାନ୍ଧବ ତ ସଂପାଦନା କଲି ସେତେବେଳକୁ ସେ ମୋର ଅତି ପରିଚିତ ହୋଇ ଗଲେଣି ।

ଶ୍ରୀଯୁକ୍ତ ଦାସ ଜଣେ ସ୍ୱାଧୀନଚେତା ସଂସ୍କାରୀ, ସାମ୍ବାଦିକ, ସାହିତ୍ୟିକ, ଲେଖକ ଓ ବ୍ୟବସାୟୀ ତଥା ବହୁ ସାହିତ୍ୟ ପତ୍ରିକା ଓ ପ୍ରକାଶକ. ସେ ଜନ୍ମ ଲେଖା ସଂପର୍କ ସାର୍ଥକ ମଧ୍ୟରେ ଅନେକ ଗଳ୍ପ ଲେଖି ସଫଳ ସେ ପରେ ଲେଖା କଲେ ସେ ଲେଖକ ନିଜ ସାହିତ୍ୟର ପ୍ରଚାର ଓ ପ୍ରସାର ହୋଇପାରିବ । ସେଥିପାଇଁ ସେ ଭଞ୍ଜନଗର ଏକଟି ମାଧ୍ୟମ ରୂପେ ବାଟବଳରେ ଏକ ଦୋକାନ ଆରମ୍ଭ କଲେ ଏବଂ ଜଣେ ସଂସ୍କାରୀ ହିସାବରେ ସେହି ଦୋକାନର ନାମ ରଖିଲେ 'ଛାତ୍ର ସମ୍ପଦ ବୁକ୍ ଷ୍ଟୋର' ।

ଜଣେ ଅନ୍ୟତମ ସାହିତ୍ୟ ପ୍ରେମିକ ଓ ଜଣେ ସ୍ୱାଧୀନଚେତା ସଂସ୍କାରୀ ହିସାବରେ ତାଙ୍କର ନିଜ ଅହଂକାର କିଛି ନାହିଁ । ସେ ଜଣେ ଅତି ନମ୍ରସ୍ୱଭାବୀ ଓ ମେଳାପି ଲୋକ । ସରକାରୀ ଚାକିରିରୁ ଅବସର ନେବାପରେ ସେ ପରବର୍ତ୍ତୀ ସାହିତ୍ୟ ସାଧନାରେ ବ୍ରତୀ ହୋଇ ବହୁ ପ୍ରବନ୍ଧ, ଗଳ୍ପ, କାବ୍ୟ, କବିତା, ସମାଲୋଚନା ଐତିହାସିକ ଘଟଣାବଳୀ ଉପରେ ଆଧାରିତ ଲେଖା, ଜୀବନୀ ଓ କାହାଣୀ ମୂଳକ ଲେଖା ଆଦି ଲେଖି ନିଜର ପ୍ରତିଷ୍ଠା ଅର୍ଜନ କରିପାରିଥାଆନ୍ତି ।

ଶ୍ରୀଯୁକ୍ତ ଦାଶଙ୍କର ପ୍ରଥମ ବହିଟି ହେଲ 'ଗୋପବନ୍ଧୁ ସ୍ମୃତି' । ଏହା ୧୯୪୪ ମସିହାରେ ଉତ୍କଳନିଧି ପ୍ରେସ୍, ଅସ୍କା, ଗଞ୍ଜାମରେ ମୁଦ୍ରିତ ହୋଇଥିଲ କନ୍ତୁ ଲେଖକଙ୍କର ପ୍ରଥମ ପ୍ରବନ୍ଧଟି ହେଲ 'ନେଲେଶ୍ୱଠାରେ ଜାନର ଯାତ୍ରା' ଏହା ୧୯୩୧ ମସିହାରେ ବ୍ରହ୍ମପୁରରୁ ପ୍ରକାଶିତ 'ଦୈନିକ ଆଶା'ରେ ପ୍ରକାଶ ପାଇଥିଲ ।

ତାଙ୍କ ଲେଖନୀ ନିଃସୃତ ସାରସ୍ୱତ ପୁଷ୍ପ ସମୂହ ହେଲେ ବିଭିନ୍ନ ପ୍ରକାର ୧୮ ଖଣ୍ଡ ବହି । ଉତ୍କଳର ଦେବାଦେବୀ ଓ ମନ୍ଦିରମାନଙ୍କ ବିଷୟରେ ୨୨ ଗୋଟି ପ୍ରବନ୍ଧ, ଭକ୍ତଙ୍କ ସଂପର୍କରେ ପ୍ରକାଶିତ ୩୫ ଗୋଟି ପ୍ରବନ୍ଧ, ଜନ ସଂସ୍କୃତି ଉପରେ ଆଧାରିତ ୧୪ ଗୋଟି ପ୍ରବନ୍ଧ, ସ୍ୱାଧୀନତା ସଂଗ୍ରାମ ଉପରେ ଆଧାରିତ ୮ ଗୋଟି ପ୍ରବନ୍ଧ, କଳାହାଣ୍ଡି ସାହିତ୍ୟ ଉପରେ ଆଧାରିତ ୭ ଗୋଟି ପ୍ରବନ୍ଧ, ଜୀବନୀ ଉପରେ ଆଧାରିତ ୧୪ ଗୋଟି ଲେଖା, ଐତିହାସିକ ପ୍ରବନ୍ଧ ୪ ଗୋଟି, ଅନୁଷ୍ଠାନ ଓ ଦର୍ଶନୀୟ ସ୍ଥାନମାନଙ୍କ ଉପରେ ଆଧାରିତ ୭ ଗୋଟି ଲେଖା ତଥା ଅନ୍ୟାନ୍ୟ ବହୁ ଲେଖା । ଶ୍ରୀଯୁକ୍ତ ଦାଶଙ୍କର ଉପରୋକ୍ତ ଲେଖାଗୁଡ଼ିକୁ ପାଠକଲେ ଜଣାଯାଏ ଯେପରି ସେ ସାରା ଉତ୍କଳ ଭ୍ରମଣ କରିଛନ୍ତି । ଉତ୍କଳର ସାମଗ୍ରୀକ ଚିତ୍ର ଯେପରି ତାଙ୍କ ଲେଖାମାନଙ୍କରେ ଶୋଭ ମଣ୍ଡିତ କରୁଛି ।

ଶ୍ରୀଯୁକ୍ତ ଦାଶଙ୍କର ଏମିତି ବହୁ ଲେଖା ଓଡ଼ିଆ ଦାର୍ଶନିକ ଜନଜୀବନ ଉପରେ ଆଧାରିତ । ଯାହାକି ଓଡ଼ିଆ ସାହିତ୍ୟାକାଶରେ ଏକ ଅମଳିନ ପ୍ରଦୀପ ହିସାବରେ ବିକଶିତ ହୋଇ ରହିଛି । ତାଙ୍କ ଲେଖାମାନଙ୍କରେ ଶିକ୍ଷା, ସାହିତ୍ୟ, ସଂସ୍କୃତି, ସଭ୍ୟତା, ପ୍ରେମ, କରୁଣା, ଭକ୍ତି ତଥା ଦେଶପ୍ରେମର ବାରିଧାର ପ୍ଲାବିତ ହୋଇଛି । ସେ ହେଉଛନ୍ତି ଓଡ଼ିଆ ସାହିତ୍ୟର ଜଣେ ଯଶସ୍ୱୀ ।

ଖାଲି ସାହିତ୍ୟ ନୁହେଁ ସେ ଗୁହ ଜୀବନରୁ ଥିଲେ ଜଣେ ଦେଶ ଭକ୍ତ । କଟାରେ ଅନ୍ଧ ସ୍କୁଲ ଚଲେଇ ବଣିଆ, ଗୁଣ ଚାନ୍ଦ, ଗୁଣିଆ ପରି ନୋ ପତ ରହ୍ନ ବ୍ୟକ୍ତ ତାଙ୍କୁ ଜଣେ ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ ଓ ସାମ୍ବାଦିକ ହିସାବରେ ବହୁତ ସମ୍ମାନ ଦିଅନ୍ତି । ଆସ୍ତେ ଆସ୍ତେ ତାଙ୍କ ଘର ସମ୍ପାଦ ବୁକ୍ ଷ୍ଟୋର ଭଞ୍ଜନଗରର ସାହିତ୍ୟିକ ଓ ସାହିତ୍ୟ ପ୍ରେମୀମାନଙ୍କର ଏକ ଆଡ୍ଡାଶାଳରେ ପରିଣତ ହୋଇଗଲ । ମୁଁ ବହୁ ସମୟ ସେଠାରେ ଯାଇ ବସେ । ମୁଁ ଯେଉଁ ଦିନ ସେଠାକୁ ଯାଇଛି ସେ କିଛିନା କିଛି ତାଙ୍କର ନୂଆ ଲେଖା ମୋତେ ଦେଖାନ୍ତି । ଆମ୍ଭେ ଏହା ଉପରେ ଆଲୋଚନା କରୁ । ମୁଁ ବି ବେଳେବେଳେ କିଛି ଲେଖା

ତାଙ୍କୁ ପଢ଼ାଏ । ଏହିପରି ଆଳାପ ଓ ଆଲୋଚନା ଭିତରେ ପଡ଼େ ବ୍ରହ୍ମପୁରର ଐତିହାସିକ ପୀଠମାନଙ୍କ କଥା । ସେ ଜଣେ ବ୍ରହ୍ମପୁରର ଶ୍ରେଷ୍ଠ ସାହିତ୍ୟିକ ହେଲେ ବି ମୋତେ ତାଙ୍କ ସମସ୍ତ ଏହି ବ୍ରହ୍ମପୁରର ଐତିହାସିକ ସାଧନାପୀଠମାନଙ୍କ ବିଷୟରେ ବହୁ କଥା ଶୁଣାଇଛନ୍ତି ଓ ମୁଁ ତାଙ୍କୁ ବହୁ ତଥ୍ୟ ପ୍ରଦାନ କରିଛି ଏବଂ ମିଶିକରି ମଧ୍ୟ କେତେକ ଦର୍ଶନୀୟ ସ୍ଥାନକୁ ବୁଲିଯାଇଛୁ ଏବଂ ଲେଖା ସଂଗ୍ରହ କରିଛୁ । ମୁଁ ଗ୍ରନ୍ଥରେ 'ଟେଟଡ଼ିମାଳ' ସଂଗ୍ରହ କରିବା କଥା ଶୁଣି ସେ ଅତ୍ୟନ୍ତ ଖୁସି । ମୁଁ ଯେତେବେଳେ ଡକ୍ଟରେଟ (ପି ଏଚ ଡି) କରିବା ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ୧୯୮୭ ମସିହାରେ ରେଜିଷ୍ଟ୍ରେସନ୍ କଲି ସେତେବେଳେ ସେ ମୋ ଉପରେ ଯେମିତି ଖୁସି ମୁଁ ୧୯୯୩ ମାର୍ଚ୍ଚ ମାସରେ ଡକ୍ଟରେଟ୍ ପାଇଲି ପରେ ସେ ତା'ଠାରୁ ବେଶି ଖୁସି ହୋଇ ମୋତେ କୁଣ୍ଢାଇ ପକାଇଲେ । ମୁଁ ଡକ୍ଟରେଟ୍ ପାଇବା ପୂର୍ବରୁ ତାଙ୍କ ସେତେବେଳେ ଯେଉଁ ବହି ମାଗିଛି ସେ ମୋତେ ସାହାଯ୍ୟ କରିଛନ୍ତି । ତାଙ୍କ ପ୍ରେରଣା ଏ ସହଯୋଗ ମୋ ପାଇଁ ଅତୁଳ ସମ୍ପଦ ହୋଇ ରହିବ । ଏ ସବୁ କହିବାର ଅର୍ଥ ହେଲା ମୋ ପରି ସେ ବହୁ ସାରସ୍ୱତ ସାଧକଙ୍କୁ ବହୁ ଉତ୍ସାହ ଓ ପ୍ରେରଣା ଯୋଗାଇଛନ୍ତି ।

ବର୍ତ୍ତମାନ ଶ୍ରୀଯୁକ୍ତ ଦାଶଙ୍କ ସହ ମୋର ସମ୍ପର୍କ ଖୁବ୍ ନିବିଡ଼ ହୋଇ ଗଲାଣି । ହଠାତ୍ ୧୯୯୩ ମସିହା ସ୍ୱାଧୀନତା ଦିବସ ଅବସରରେ ମୁଁ ତାଙ୍କୁ ଆମ ସ୍କୁଲକୁ ଆସି ପିଲମାନଙ୍କୁ ନିଜ ଅଭିଜ୍ଞତା କିଛି କହିବା ପାଇଁ ପୂର୍ବ ଦିନ ଅନୁରୋଧ କଲି । ସେ ଖୁସିରେ ମୋତେ ଅନୁମତି ଦେଲେ । ତା' ପରଦିନ ଅର୍ଥାତ୍ ଅଗଷ୍ଟ ୧୫ ତାରିଖ ଦିନ ସକାଳ ମୁଁ ସ୍କୁଟର ନେଇ ତାଙ୍କ ଘରେ ପହଞ୍ଚିଲି । ପହଞ୍ଚିଲା ବେଳକୁ ଝିପି ଝିପି ବର୍ଷା । ମନ୍ଦ ହୋଇଲା ପାଣି । ମୋତେ ଦେଖି ସେ ବହୁତ ହସିଲେ ଏବଂ କହିଲେ ସ୍କୁଟରକୁ ବାବୁ ଛତା କରନ୍ତୁ ବାନ୍ଧି ଆଜି ସ୍କୁଲକୁ ଯିବା । ସେତେବେଳେ ତାଙ୍କ ବୟସ ୭୩ ବର୍ଷ । ବାର୍ଦ୍ଧକ୍ୟ ସଂପୂର୍ଣ୍ଣ ରୂପେ ଗ୍ରାସ କରିନି ତଥାପି ତାଙ୍କର ଉତ୍ସାହ, ଦମ୍ଭ ମୋତେ ବହୁତ ଆନନ୍ଦ ଦେଲା ।

ମୁଁ ପିଲଙ୍କୁ ଆଗରୁ କହିଥାଏ ଯେ ଅଗଷ୍ଟ ୧୫ ଦିନ ଆମ ସ୍କୁଲକୁ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସାହିତ୍ୟିକ ଆସିବେ । ଏଣୁ ପିଲାଙ୍କର ଉତ୍କଣ୍ଠା ବଢ଼ି ଯାଇଥାଏ । ସେହି ଦିନ ସ୍କୁଲର ପ୍ରଭାତ ଫେରି, ପତାକା ଉତ୍ତୋଳନ,

ନଗର ପରିକ୍ରମା ସବୁ ସରିଲା । ସଭାକାର୍ଯ୍ୟ ଆରମ୍ଭ ହେଲା । ପିଲଙ୍କ ଉତ୍କଣ୍ଠା ଆହୁରି ବଢ଼ି ଚାଲିଲା । ଯଦିଓ ଅନୁଷ୍ଠାନ (ସ୍ୱାମୀ ସଦାନନ୍ଦ ହାଇ ବିଦ୍ୟାଳୟ, ଗୁରୁମୁ, ଗଞ୍ଜାମ)ର ପ୍ରଧାନ ଶିକ୍ଷକ ହିସାବରେ ସେଦିନର ସଭାପତିତ୍ୱ ଗ୍ରହଣ କଲି ତଥାପି ସେଦିନ ସେ ଥିଲେ ଆମ ଅନୁଷ୍ଠାନର [illegible] । ତାଙ୍କର ଆତ୍ମାନୁଭୂତି ତଥା ସ୍ୱାଧୀନତା ସଂଗ୍ରାମର ଘଟଣାବଳୀରୁ ସେ ନେଇ କେତୋଟି ଘଟଣା ଆମ ଛାତ୍ରଛାତ୍ରୀଙ୍କ ସାମ୍ନାରେ ବର୍ଣ୍ଣନା କଲେ. ତାହା ଥିଲା ଅତ୍ୟନ୍ତ ହୃଦୟସ୍ପର୍ଶୀ । ସେହି ଦିନ ସଭା ଦୁଇଟି ନାଟକ ଓ ନୃତ୍ୟ ପାଳିଟି ଯାଇଥିଲା । ପିଲାମାନେ ତନ୍ମୟ ହୋଇ ଶୁଣୁଥିଲେ ଶ୍ରୀଯୁକ୍ତ ଦାଶଙ୍କର ଆତ୍ମଜୀବନୀର କଥା । ଶେଷରେ ଜଣେ ଛାତ୍ର ପଚାରିଲା 'ସାର୍, ଆପଣ ଲୁଣ ମାଡ଼ ଖାଇଛନ୍ତି ? ଜେଲ୍ ଯାଇଛନ୍ତି ?''

ସେ କହିଲେ ସବୁ ଖାଇଛନ୍ତି, ସବୁ ସହିଛନ୍ତି । ସେହିଦିନ ଶ୍ରୀଯୁକ୍ତ ଦାଶଙ୍କୁ ମୁଁ ଆମ ଅନୁଷ୍ଠାନକୁ ଆଣି ନିଜେ ଧନ୍ୟ ମନେକଲି ଏବଂ ତାଙ୍କ ପ୍ରେରଣାରୁ ଯଦି ଛାତ୍ର ଛାତ୍ରୀଙ୍କ ମନରେ କିଛିଟା ପ୍ରଭାବ ପଡ଼ିଲା ସେତିକି ଆମ ପାଇଁ ଯଥେଷ୍ଟ ହେବ— ଏଇଆ ଭାବିଲି ।

ଆଉ ଦିନକର କଥା, ଦିନେ ତାଙ୍କ ଘରେ ଯାଇଁ ବସିଥିଲି । ସେଠାରେ ସେ ବାହାର କଲେ ବିଭିନ୍ନ ଦେଶର ମୁଦ୍ରା, ପଇସା, ଦିଆସିଲି ଖୋଳ ତଥା ଅନ୍ୟାନ୍ୟ ଅମୂଲ୍ୟ ଜିନିଷ । ଯାହାର ମୂଲ୍ୟ କିଛି ନାହିଁ କିନ୍ତୁ ହିସାବ କଲେ ଅମୂଲ୍ୟ ଧନ । ଏମିତି ବିଭିନ୍ନ ପ୍ରକାର ଜିନିଷ ସଂଗ୍ରହ କରିବାରେ ମଧ୍ୟ ଶ୍ରୀଯୁକ୍ତ ଦାଶଙ୍କର ସଉକ କିଛି କମ୍ ନାହିଁ ।

ଶ୍ରୀଯୁକ୍ତ ଦାଶ ସେ ଜଣେ ସ୍ୱାଧୀନତା ସଂଗ୍ରାମୀ, କେବଳ ଏ ଜଣେ ଅବସରପ୍ରାପ୍ତ ଅଫିସର ତାହା ନୁହେଁ, ସେ ଗଞ୍ଜାମର ସାହିତ୍ୟ ଓ ଐତିହାସିକ ଚରିତ୍ରକୁ ଜନସାଧାରଣଙ୍କ ଆଗରେ ପରିଚିତ କରାଇବାରେ ଏବଂ ଅପ୍ରକାଶିତ ତାଳପତ୍ର ପୋଥିରୁ ଲେଖା ସଂଗ୍ରହ କରି ତାକୁ ନିଜେ ନୂଆ ଢଙ୍ଗରେ ପ୍ରକାଶ କରିବା ଓଡ଼ିଆ ସାହିତ୍ୟ ପାଇଁ ଅନ୍ୟ ଏକ ଉପାଦେୟ କାର୍ଯ୍ୟ ନୁହେଁ ତ ଆଉ କଣ ?

ଏତଦ୍ ବ୍ୟତୀତ ସେ ଜଗନ୍ନାଥ ପ୍ରସାଦର ବିଶ୍ୱନାଥ ସେବା ସମିତି ଓ ଭଞ୍ଜନଗରର ଭଞ୍ଜ ସାହିତ୍ୟ ପରିଷଦର ପୂର୍ବତନ ସଂପାଦକ । ଜଗନ୍ନାଥପୁର ଶାସନର ଚନ୍ଦ୍ରଶେଖର ପାଠାଗାରର ପ୍ରତିଷ୍ଠାତା ତଥା ଗଞ୍ଜାମ ଜିଲ୍ଲା ସ୍ୱାଧୀନତା

ସଂଗ୍ରାମୀ ସଂଘର ସଂପାଦକ, ରାଜ୍ୟ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ସଭାପତି, ଉପେନ୍ଦ୍ର ଭଞ୍ଜ କଲଚରାଲ ଏକାଡେମୀ, ଭଞ୍ଜନଗରର ଉପ-ସଭାପତି ପରି ବହୁ ଜନହିତକର ତଥା ସାହିତ୍ୟ ଓ ସାଂସ୍କୃତିକ ସଂସ୍ଥାର ସେ କର୍ମକର୍ତ୍ତା ଅଛନ୍ତି ।

କିଛି ଦିନ ତଳେ ସେ ହଠାତ୍ ଗୁମ୍ସୁର ଛାଡ଼ିବା ପାଇଁ ସ୍ଥିର କଲେ । ମୋତେ କହିଲେ ପ୍ରଦୀପ ବାବୁ ମୁଁ ଭଞ୍ଜନଗର ଛାଡ଼ୁଛି କିନ୍ତୁ ଏଠାକୁ ଆସୁଥିବି । ମୁଁ ଅବସରପ୍ରାପ୍ତ ହୋଇଗଲି ଏବଂ ଭାବିଲି ମୋର ବାକି ଅବସର ଜୀବନ ଭଞ୍ଜ ମାଟିରେ କଟାଇବା ପାଇଁ ଶେଷ ନିଷ୍ପତ୍ତି ନେଇ ଏଠାରେ ଭଞ୍ଜଙ୍କ ନାମରେ ବହୁ ଦୋକାନ ଓ ଭଞ୍ଜଙ୍କ ଅପ୍ରକାଶିତ ଲେଖା ଗୁଡ଼ିକ ତାଳପତ୍ରରୁ ସଂଗ୍ରହ କରି ଛାପିବାର ନିଶାରେ ମସ୍‌ଗୁଲ୍ ଥିଲେ, ସେ ପୁଣି କାହିଁକି ହଠାତ୍ ଏମିତି ନିଷ୍ପତ୍ତି ନେଲେ ?

ସେ କହିଲେ, "ସ୍ତ୍ରୀଙ୍କର ଉତ୍କଟ ରୋଗ ସାଙ୍ଗକୁ ଜ୍ୟେଷ୍ଠ ପୁଅର ଇଚ୍ଛା ମୋତେ ଭଞ୍ଜନଗର ଛାଡ଼ିବାକୁ ବାଧ୍ୟ କରୁଛି ।" ଏତକ କହିଲେ ତାଙ୍କ ଆଖି ଜଳ ଜଳ ହୋଇ ଯାଇଥିଲା । ମୁଁ କହିଲି ସମୟ ହିଁ ବଳବାନ । କିନ୍ତୁ ମୁଁ ଜାଣିଛି ଆପଣ ଯେଉଁ ସ୍ଥାନକୁ ଗଲେ ମଧ୍ୟ ସାହିତ୍ୟ କାମ କରିବେ । ମୋ ଏଇ କଥା ସେ ଚୌଦ୍ୱାର ଗଲେ । ପୁଅ ପାଖରେ ରହିଲେ । ଥରକୁ ଥର ମୋ ନିକଟକୁ ପତ୍ର ପଠାଇଲେ । ସବୁ ଚିଠିରେ ସେ ଲେଖନ୍ତି 'ମୋ ସାହିତ୍ୟ ସାଧନା ଠିକ୍ ଚାଲିଛି, ତୁମ ବନ୍ଧୁ ଲେଖା କାମ କେଉଁ ପର୍ଯ୍ୟନ୍ତ ଗଲାଣି ? ଇତ୍ୟାଦି...ଇତ୍ୟାଦି... ।

ଶ୍ରୀଯୁକ୍ତ ଦାଶ ବହୁ ସରକାରୀ ଏବଂ ବେସରକାରୀ ସଂସ୍ଥାମାନଙ୍କରୁ ବହୁ ମାନପତ୍ର ଓ ଉପାୟନ ଲାଭ କରିଛନ୍ତି । କଥାରେ କହିବାକୁ ଗଲେ ବିଦ୍ୱାନ ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ କାଳଜୟୀ । ତେଣୁ ଶ୍ରୀଯୁକ୍ତ ଦାଶ ମଧ୍ୟ ଜଣେ ଯଶସ୍ୱୀ ସ୍ରଷ୍ଟା ହିସାବରେ ପରିଗଣିତ ହୋଇ କାଳକାଳକୁ ବଞ୍ଚି ରହିଥିବେ ଓ ତାଙ୍କର ଦିଗ୍‌ଦର୍ଶନ ଓ ପ୍ରେରଣା ନୂତନ ଯୁବ ପିଢ଼ିକୁ ବିକଶିତ କରାଇବାରେ ଯଥେଷ୍ଟ ସହାୟକ ହେବ ନିଶ୍ଚୟ ଏଥିରେ ସନ୍ଦେହ ନାହିଁ ।

ସେ ଗୁମୁସରର ଜଗନ୍ନାଥ ପ୍ରସାଦ ନିକଟସ୍ଥ ଜଗନ୍ନାଥପୁର ଶାସନରେ ତା ୧-୧-୧୯୨୦ ମସିହାରେ ଜନ୍ମ ଗ୍ରହଣ କରି ଗୁମୁସରର ମର୍ଯ୍ୟାଦା ବଢ଼ାଇଛନ୍ତି । କିନ୍ତୁ ସେ କେବଳ ଗୁମୁସର ନୁହେଁ ସାରା ଉତ୍କଳର ପୂଜ୍ୟ ଓ କମନୀୟ । ଶେଷ କଥାରେ ଅଛି 'ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ...' ।



କବି-କୁଟୀର
ଗାମୁଣ୍ଡି-କରଣ ସାହି
ଭଞ୍ଜନଗର-୧
୨୬।୧।୬୨

# ସଂଗ୍ରାମୀ-ସାହିତ୍ୟିକ ମାଗୁଣି ଦାଶ

**ପଦ୍ମଚରଣ ସାହୁ**

ଐତିହାସିକ ଡ଼କ୍ଟର ଜଗନ୍ନାଥ ପଟ୍ଟନାୟକଙ୍କ 'Landmarks of Quit India movement in Orissa' ପୁସ୍ତକ ଅଧ୍ୟୟନ କଲାବେଳେ ଅବଗତ ହେଲି ଯେ ଭାରତ ଛାଡ଼ ଆନ୍ଦୋଳନ ସମୟରେ ସ୍ୱାଧୀନତା ସଂଗ୍ରାମୀ ମାଗୁଣି ଦାଶ ଆସିକାଠାରେ ଋଷିକୁଲ୍ୟା ନଦୀର ସେତୁଟିକୁ ଧ୍ୱଂସ କରିଦେବା ଯୋଜନା କରିଥିଲେ । ସେଥିପାଇଁ ସେ ଅତ୍ୟନ୍ତ ଗୋପନୀୟ ଭାବେ ଡ଼ିନାମାଇଟ୍ ସଂଗ୍ରହ କରି ଆସିକାର ଆର. ସୀତାମୂର୍ତ୍ତିଙ୍କ ପାଖରେ ରଖିଥିଲେ । କିନ୍ତୁ ତାହାର ସଦ୍‌ବ୍ୟବହାର କରିବା ପୂର୍ବରୁ ମାଗୁଣି ବାବୁ ବ୍ରିଟିଶ ପୋଲିସ୍ ହାତରେ ଧରା ପଡ଼ିଗଲେ ।

୧୯୯୦ ନଭେମ୍ବର ମାସର ପ୍ରଳୟଙ୍କରୀ ବନ୍ୟାରେ ଭାସି ଯାଇଥିବା ଐତିହାସିକ ଋଷିକୁଲ୍ୟା ସେତୁକୁ ୧୯୪୨ ଅଗଷ୍ଟ ମାସରେ ଧ୍ୱଂସ କରିଦେବା ଯୋଜନା କରିଥିବା ମାଗୁଣି ଦାଶଙ୍କ ଚେହେରା ଆଖି ଆଗରେ ନାଚି ଉଠିଲା । ଶାନ୍ତ, ସରଳ, ନିରାଡ଼ମ୍ବର ଏହି ସ୍ନେହୀ ମଣିଷଟି ସେତେବେଳେ ନାହିଁକି ଏତେ ଦୁର୍ଦ୍ଦାନ୍ତ ହୋଇ ପଡ଼ିଥିଲେ ତାହା ଜାଣିବା ପାଇଁ ମନରେ କୌତୂହଳ ଜାତ ହେଲା ଏବଂ ମାଗୁଣି ବାବୁ ଏଥର ବ୍ରହ୍ମପୁର ଆସିଲେ ତାଙ୍କଠାରୁ ସମସ୍ତ ତଥ୍ୟ ସଂଗ୍ରହ କରିନେବି ବୋଲି ସ୍ଥିର କଲି । ସେ ଆସନ୍ତି । କେବେ ଶ୍ରାବଣ ମାସର ଝିପି ଝିପି ବର୍ଷାରେ ଭିଜି ଭିଜି, କେବେ ପୌଷ ସଂଧ୍ୟାର ଶୀତରେ ଥୁଣ୍ଟି କେବେ ବୈଶାଖ ମାସର କାଳ ବୈଶାଖୀ ଝଡ଼ରେ । ଶୀତକାକର, ଝଡ଼ବର୍ଷାକୁ ଖାତିର ନାହିଁ । ପରିଣତ ବୟସରେ ବି ସେହି ସୁଲଭ ଉତ୍ସାହ । ପରିଧାନ ଖଦଡ଼ ପ୍ୟାଣ୍ଟ ସାର୍ଟ, କାନ୍ଧରେ ଝୁଲୁଥାଏ ଏକ ଥଳି ଝୁଲା । ଆସୁ ଆସୁ ପ୍ରଥମେ ପଚାରନ୍ତି "ଆଉ ବ୍ରହ୍ମପୁରରେ କାର୍ଯ୍ୟକ୍ରମ କ'ଣ ?" ମୁଁ ସଂକ୍ଷେପରେ ଉତ୍ତର ଦିଏ ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ସଂପର୍କରେ । ଗତଥର କିନ୍ତୁ ମାଗୁଣି ବାବୁ ଆସିଥିବା ବେଳେ ମୁଁ ତାଙ୍କୁ ଉତ୍ତର ନ ଦେଇ ଓଲଟା ପ୍ରଶ୍ନ ପଚାରିଲି ୧୯୪୨ରେ ଋଷିକୁଲ୍ୟା ସେତୁ ଭାଙ୍ଗିବା ଯୋଜନା କଥା । ସେ ହସି ହସି ଉତ୍ତର ଦେଲେ 'ବ୍ରହ୍ମପୁରର ସଂଗ୍ରାମୀ କାଶୀ ପାତ୍ରଙ୍କଠାରୁ ଗୋଟିଏ ଫୁଲ ମାଣ୍ଡଣାରେ ଲୁଚାଇ ଡ଼ିନାମାଇଟ ନେଇଥିଲି । ଆସିକା ପଟ୍ଟ ଋଷିକୁଲ୍ୟା ସେତୁର ତୃତୀୟ ସ୍ତମ୍ଭରେ ତିନି ଇଞ୍ଚ ଗୋଲେଇର ଦେଢ଼ଫୁଟ ଗଭୀର ଏକ ରନ୍ଧ୍ର

ଖୋଲାଯାଇଥିଲା ତାମାମାନଙ୍କ ଖଜ୍ଞିବାକୁ । ଶ୍ୟାମସୁନ୍ଦର ସାଙ୍ଗ ନାମକ ଜଣେ ସଂଗ୍ରାମୀ ସାଥୀଙ୍କ ଦ୍ୱାରା ହେହ୍ମ ଗଡ଼ ପ୍ରସ୍ତୁତ କରାଯାଇଥିଲା । ଶ୍ୟାମ ମାନ ଗୋପନୀୟତା ରକ୍ଷା କରି ନ ପାରିବା ଯୋଗୁଁ ଆମର ସମସ୍ତ ପ୍ରସ୍ତୁତ ସଂପର୍କରେ ବ୍ରିଟିଶ ପୋଲିସ ସବୁ କଥା ଜାଣିଦେଲେ ଦମନଲୀଳା ଚଳାଇଥିଲେ । ସେତେବେଳକୁ କନ୍ଧୁ ମୃତ ପ୍ରସ୍ତୁତ ସକାଳେ ଋଷିକୁଲ୍ୟା ନଦୀର ଦକ୍ଷିଣପାର୍ଶ୍ୱରେ ତିନି ମାଇଲ ପର୍ଯ୍ୟନ୍ତ ଟେଲିଗ୍ରାମ ତାର କାଟି ଦିଆଯାଇଥିଲା ଓ ଅସିକା ଟ୍ରେଜେରୀ ସଙ୍ଗ୍ରାମୀମାନଙ୍କ ଦ୍ୱାରା ଲୁଟ ହୋଇ ଯାଇଥିଲା ।

ଋଷିକୁଲ୍ୟାନଦୀର ଉତ୍ତରପାର୍ଶ୍ୱ ମହକୁମା ବ୍ରହ୍ମପୁରର ଯୋଗାଯୋଗ ଛିନ୍ନ କରି ତତ୍କାଳୀନ ବୋଦଗଣୀ, ଋଷିଲେଙ୍କା ଓ ଅସିକା ଅଞ୍ଚଳରେ ଭାରତ ଛାଡ଼ ଆନ୍ଦୋଳନକୁ ଅଧିକ ତୀବ୍ର ଏବଂ ଦୃଢ଼ମନସ୍କ କରିବା ପାଇଁ ମାଗୁଣି ବାବୁଙ୍କ ଏହି ସେତୁଭଙ୍ଗ ଯୋଜନା ପ୍ରସ୍ତୁତ କରାଯାଇଥିଲା । ଏ ଯୋଜନାର ମୂଳରେ ଥିଲେ ଅସିକାର ତତ୍କାଳୀନ ଓକିଲ କଥା ସତ୍ୟାଗ୍ରହୀ ଲିଙ୍ଗରାଜ ପଟ୍ଟନାୟକ । ତାଙ୍କର ଚନ୍ଦ୍ରପ୍ରସାଦ ଏହି ଯୋଜନାକୁ ମାଗୁଣିବାବୁ କାର୍ଯ୍ୟକାରୀ କରିବା ପାଇଁ ପ୍ରୟାସ ପୋଷଣ କରିଥିଲେ ।

ବ୍ରିଟିଶମାନଙ୍କ ଭାରତ ଛାଡ଼ ପରେ ମାଗୁଣି ଦାସ ଓଡ଼ିଶା ସରକାରଙ୍କ ଲୋକ ସଂପର୍କ ବିଭାଗର ଜଣେ ଉଚ୍ଚପଦସ୍ଥ ଅଧିକାରୀ ଭାବେ ଯୋଗଦେଇ କାମ କରିଥିଲେ; ସେଥି ସହିତ ସାହିତ୍ୟ ସାଧନାରେ ମନୋନିବେଶ କରିଥିଲେ । ଭଞ୍ଜ ସାହିତ୍ୟର ନିଷ୍ଠାପର ନୀରବ ସାଧକ । ଅପ ପ୍ରଚାରର ବିରୋଧୀ । ତେଣୁ ମାଗୁଣି ବାବୁଙ୍କ ଗବେଷଣା ତଥା ସାଧନାର କୌଣସି ଖବର ଅନେକ ସହକର୍ମୀମାନେ ବି ଜାଣି ପାରନ୍ତି ନାହିଁ । ଏ ସଂପର୍କରେ ଏକ ଘଟଣା ଏଠାରେ ଉଲ୍ଲେଖ କରାଯାଇ ପାରେ—

୧୯୯୩ ମେ' ମାସରେ ବ୍ରହ୍ମପୁରଠାରେ 'ଉତ୍କଳ ବସନ୍ତ' ପକ୍ଷରୁ ଭଞ୍ଜ ଜୟନ୍ତୀ ପାଳନ ହେଉଥାଏ । ଭଞ୍ଜ ସାହିତ୍ୟର ଜଣେ ଗବେଷକଙ୍କୁ ନଗଦ ପାଞ୍ଚ ହଜାର ଟଙ୍କା ସମେତ 'ଭଞ୍ଜଶ୍ରୀ' ଉପାଧି ପ୍ରଦାନ ବ୍ୟବସ୍ଥା ଥାଏ । କାହାକୁ ଉପାଧି ଓ ପୁରସ୍କାର ଦିଆଯିବ, ତାହା ଠିକ୍ କରିବା ପାଇଁ ଏକ ଉଚ୍ଚସ୍ତରୀୟ କମିଟି ଗଠିତ ହୋଇଥିଲା । ଯେଉଁମାନଙ୍କ ନାମ ବିଚାରକୁ ନିଆଯିବ, ସେମାନଙ୍କର କୃତି ସମୂହ ଓ ଜୀବନ ସୂଚୀ କମିଟିରେ ଦାଖଲ କରିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିଲା । ପାଞ୍ଚ ଜଣ ଗବେଷକଙ୍କ ପ୍ରସଙ୍ଗ ମୁଁ ଉପସ୍ଥାପନ

କରିଥିଲି । ସେଥିରେ ମାଗୁଣି ଦାଶଙ୍କ ନାମ ଓ ସମସ୍ତ କୃତି ରହିଥିଲା । ଏହା ଦେଖି କମିଟିର ଅନ୍ୟତମ ସଭ୍ୟ ତଥା ବ୍ରହ୍ମପୁରର ତତ୍କାଳୀନ ଲୋକସଂପର୍କ ଡେପୁଟୀ ଡାଇରେକ୍ଟର ଅତ୍ୟନ୍ତ ମହାପ୍ରାଣ ବିସ୍ମୟ ପ୍ରକାଶ କରି କହିଲେ— 'ମାଗୁଣି ଦାଶଙ୍କ ସହକର୍ମୀ ଭାବେ ମୁଁ ବହୁ ବର୍ଷ ଏକସଙ୍ଗେ କାମ କରିଛୁ । ଏବେ ମଧ୍ୟ ବହୁବାର ତାଙ୍କ ସହିତ ସାକ୍ଷାତ ହୁଏ । କିନ୍ତୁ ନିଜର ଗବେଷଣା ଓ ଏହି ବିପୁଳ ତଥା ମହତ୍ତ୍ୱପୂର୍ଣ୍ଣ କୃତି ସଂପର୍କରେ ସେ ଆଦୌ କେବେ ସୂଚନା ହିଁ ଦେଇନାହାନ୍ତି ।'

ଆତ୍ମ ପ୍ରଚାର ବିମୁଖ ସଂଗ୍ରାମୀ ତଥା ନୀରବ ସାଧକ ମାଗୁଣି ଦାଶଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଛି । ଆଜିର ଏ ଶୁଭ ଅବସରରେ ମାଗୁଣି ବାବୁଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ । ତାଙ୍କର ନିରଳସ ଗବେଷଣା ଉତ୍ତର ପୁରୁଷଙ୍କୁ ଅଧିକରୁ ଅଧିକ ଦିଗ୍ ଦର୍ଶନ ଦେଉ, ଏହା ହିଁ ଶ୍ରୀଜଗନ୍ନାଥଙ୍କଠାରେ ପ୍ରାର୍ଥନା ।



ଆଡ଼ଭୋକେଟ
ଅଶୋକ ନଗର,
ବ୍ରହ୍ମପୁର

# ଶ୍ରୀ ମାଗୁଣି ଦାଶ : ଏକ ଅନନ୍ୟ ପ୍ରତିଭା

ଡ଼ଃ ଦଣ୍ଡପାଣି ବେହେରା

ବହୁମୁଖୀ ପ୍ରତିଭାର ଅଧିକାରୀ, ଏକନିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଏବଂ ଆଜୀବନ ସାହିତ୍ୟ ଓ ସଂସ୍କୃତିର ସାଧକ ତଥା ସମାଜସେବୀ ଶ୍ରୀ ମାଗୁଣି ଦାଶ ଘୁମୁସର ଜଗନ୍ନାଥ ପ୍ରସାଦ ସନ୍ନିକଟସ୍ଥ ଜଗନ୍ନାଥପୁର ଶାସନରେ ୧୯୨୦ ସାଲ ଜାନୁଆରୀ ପନ୍ଦର ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କର ନାମ ହେଲ ଅନନ୍ତ ଦାଶ ଓ ମାତାଙ୍କର ନାମ ହେଲ ରେବତୀ । ଉଭୟ ପିତାମାତାଙ୍କର ଗୁଣ ବହନ କରି ମାଗୁଣି ପିଲଟି ଦିନରୁ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ । ନିଜ ଗ୍ରାମସ୍ଥ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ଲାଭ କଲା ପରେ ସେ ଜଗନ୍ନାଥ ପ୍ରସାଦଠାରେ ନିମ୍ନ ମାଧ୍ୟମିକ ଓ ମାଧ୍ୟମିକ ଶିକ୍ଷା ସମାପନ କଲେ । ତତ୍ପରେ ଉଚ୍ଚତର ଶିକ୍ଷା ଅଧ୍ୟୟନ କରିବା ଅବସରରେ ସେ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ମହାତ୍ମା ଗାନ୍ଧୀଙ୍କର ଆହ୍ୱାନରେ ଅଂଶ ଗ୍ରହଣ କରି ବହୁବାର କାରାବରଣ କରିଥିଲେ । ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରୁଥିବା ଅବସରରେ ସମାଜ ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କର ଆଦର୍ଶରେ ପ୍ରଭାବିତ ହୋଇ ସେ ବହୁ ସମାଜ ସଂସ୍କାରକ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ । ସେହିଭଳି ସ୍ୱାଧୀନତା ସଂଗ୍ରାମୀ ନିରଞ୍ଜନ ପଟ୍ଟନାୟକଙ୍କର ସଂସର୍ଗରେ ଆସି ସେ ଖଦଡ଼ ବୟନ ତଥା ହରିଜନ ଆନ୍ଦୋଳନରେ ସଂଯୁକ୍ତ ହେଲେ । ଓଡ଼ିଆ ଆନ୍ଦୋଳନର ନେତୃମଣ୍ଡଳୀ ଶଶିଭୂଷଣ ରଥ, ହରିହର ପଣ୍ଡା, ନରସିଂହ ଦାସ ଆଦି ବ୍ୟକ୍ତିମାନଙ୍କର ସାନ୍ନିଧ୍ୟ ଲାଭ କରି ସେ ଓଡ଼ିଆ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କଲେ । ବିଶ୍ୱନାଥ ଦାଶଙ୍କର ପ୍ରଭାବ ଫଳେ କିଛି କାଳ ସେ ରସ୍ତମେଲ ଓ ଆନ୍ଦୋଳନରେ ମଧ୍ୟ ସଂଯୁକ୍ତ ହୋଇଥିଲେ । ଏହିଭଳି ବହୁମୁଖୀ ଜନ ସଂଗଠନ ଓ ଆନ୍ଦୋଳନରେ ଅଂଶ ଗ୍ରହଣ କରି ସେ ବହୁ ଉଚ୍ଚ ନେତା ଓ ମନୀଷୀମାନଙ୍କର ସାନ୍ନିଧ୍ୟରେ ରହି ନିଜ ବ୍ୟକ୍ତିତ୍ୱ ଓ ଜୀବନାଦର୍ଶକୁ ଯଥାର୍ଥ ଭାବେ ଗତିଶୀଳ କରାଇଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ତାଙ୍କର ସ୍ୱାଧୀନତା ସଂଗ୍ରାମୀ ଅବଦାନର ପରିପ୍ରେକ୍ଷୀରେ ଓଡ଼ିଶା ସରକାରଙ୍କର ଲୋକ ସଂପର୍କ ବିଭାଗରେ ଏକ ପ୍ରଶାସକ ଭାବେ ନିଯୁକ୍ତ କରାଗଲା । ବହୁ ଜିଲ୍ଲାର ଲୋକ ସଂପର୍କ ଜିଲ୍ଲାଧିକାରୀ ଭାବେ ସେ ଅବସର ଗ୍ରହଣ କରିବା ଯାଏଁ କାର୍ଯ୍ୟ

କରିଥିଲେ । ଏହି ବିଭାଗରେ କାର୍ଯ୍ୟ କରୁଥିବା ସମୟରେ ସେ ସାହିତ୍ୟ ଓ ସଂସ୍କୃତି ପ୍ରତି ବିଶେଷ ଭାବେ ଆକୃଷ୍ଟ ହୋଇ ସେ ସଂକ୍ରାନ୍ତରେ ବହୁ ଗ୍ରନ୍ଥ ଓ ଲେଖା ରଚନା କରି ସାରସ୍ୱତ ଭଣ୍ଡାରକୁ ସମୃଦ୍ଧିମନ୍ତ କଲେ । ତାଙ୍କର ରଚନାମାନଙ୍କୁ ବହୁ ଭାଗରେ ବିଭକ୍ତୀକରଣ କରାଯାଇପାରେ, ଯଥା: । (୧) ଗ୍ରନ୍ଥ (ବହି) ସମୂହ; (୨) ଦେବଦେବୀ ମନ୍ଦିର ସଂକ୍ରାନ୍ତ ରଚନାବଳୀ, (୩) ଭଞ୍ଜ ସାହିତ୍ୟ ସଂକ୍ରାନ୍ତ ରଚନାବଳୀ (୪) ଆଦିବାସୀ ଲୋକ ସଂସ୍କୃତି ସଂକ୍ରାନ୍ତ ରଚନାବଳୀ, (୫) ସ୍ୱାଧୀନତା ସଂଗ୍ରାମ ସଂପର୍କୀତ ରଚନାବଳୀ, (୬) କଳାହାଣ୍ଡି ସାହିତ୍ୟ ବିଷୟକ ରଚନାବଳୀ, ଏବଂ (୭ ଜୀବନୀ ବିଷୟକ ଲେଖାମାନ । ତାଙ୍କର ସଂପର୍କରେ ପ୍ରକାଶିତ ସୂଚନା-ପୁସ୍ତିକାରୁ (Bio-data) ଜଣାଯାଏ ଯେ ସେ ଅଠରଟି ଗ୍ରନ୍ଥର ରଚୟିତା ଅଟନ୍ତି । ତାଙ୍କର ବହୁ ବିଷୟରେ ଲିଖିତ ରଚନାମାନଙ୍କର ସଂଖ୍ୟା ହେଲା ଏକଶହ ଏଗାର ଗୋଟି । ତନ୍ମଧ୍ୟରୁ ଆକାଶବାଣୀରେ ଆଠ ଗୋଟି ପ୍ରସାରିତ ଏବଂ ଦୂରଦର୍ଶନରେ ଏକ ଗୋଟି ପ୍ରଦର୍ଶିତ ହୋଇଛି । ତାଙ୍କର ଗ୍ରନ୍ଥମାନଙ୍କ ମଧ୍ୟରେ ସର୍ବାଧିକ ଉପଯୋଗୀ ଓ ଜନାଦୃତ ଗ୍ରନ୍ଥଟି ହେଲା—"ଗଞ୍ଜାମ ସ୍ୱାଧୀନତା ସଂଗ୍ରାମୀ ସ୍ମରଣିକା" । ଗଞ୍ଜାମ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମର କ୍ରମିକ ଇତିହାସ ରଚନା କ୍ଷେତ୍ରରେ ଏହି ବହିଟି ଅତ୍ୟଧିକ ସହାୟକ ହୋଇ ପାରିଛି । ଏଣୁ ମାଗୁଣି ବାବୁ ଗବେଷକମାନଙ୍କର ଏକାନ୍ତ ପ୍ରଶଂସାର୍ହ ।

ତାଙ୍କର ସ୍ୱାଧୀନତା ସଂଗ୍ରାମ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରକୁ ଉଲ୍ଲେଖନୀୟ ଅବଦାନ ନିମନ୍ତେ ତାଙ୍କୁ ଓଡ଼ିଶା ରାଜ୍ୟ ସରକାର, କେନ୍ଦ୍ରସରକାର, ଯଦୁମଣି ସାହିତ୍ୟ ସଂସଦ, ବେମଣା ଯୁବ ପରିଷଦ, ଚିନ୍ତା ଓ ଚେତନା ସଂସଦ ତଥା ପ୍ରାଚୀନ ସାହିତ୍ୟ ସଂସଦ ତରଫରୁ ମାନପତ୍ର ଓ ଉପାଧିମାନ ସେ ପ୍ରାପ୍ତ ହୋଇଛନ୍ତି ।

ସେ ବହୁ ଅନୁଷ୍ଠାନ ଓ ସଂସଦର କାର୍ଯ୍ୟଭାର ଗ୍ରହଣ କରି ସ୍ୱକୀୟ ସାଂଗଠନିକ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । ସେ ଗ୍ରହଣ କରିଥିବା କାର୍ଯ୍ୟଭାରମାନ ହେଲା ଯଥା (୧) ଜଗନ୍ନାଥ ପ୍ରସାଦର ବିଶ୍ୱନାଥ ସେବା ସମିତିର ସଂପାଦକ, (୨ ଜଗନ୍ନାଥ ଶାସନ ଗ୍ରାମସ୍ଥ ଚନ୍ଦ୍ରଶେଖର ପାଠାଗାରର ପ୍ରତିଷ୍ଠାତା, (୩) ଭଞ୍ଜନଗରର ଭଞ୍ଜସାହିତ୍ୟ ପରିଷଦର ସଂପାଦକ, (୪) ଗଞ୍ଜାମ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସଂଘର ସଂପାଦକ (୫) ଉତ୍କଳ ପ୍ରାଦେଶିକ କଂଗ୍ରେସ୍

ଭକ୍ତିନିତ ସମ୍ପାଦକ (୬) ଈଷ୍ଟ୍ରନଗରସ୍ଥ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଙ୍ଘର ସଭାପତି (୭) "ଯୁବକ ମିତ୍ର" ନାମକ ଏକ ହସ୍ତଲିଖିତ ପତ୍ରିକାର ସମ୍ପାଦକ, ଏବଂ ଏଭଳି ଇତ୍ୟାଦି । ଶିକ୍ଷାଗତ ଯୋଗ୍ୟତା ହେଲା ସେ ମେଟ୍ରିକ ଉତ୍ତୀର୍ଣ୍ଣ ଏବଂ ଆୟୁର୍ବେଦିକ ଶାସ୍ତ୍ରୀ ଶିକ୍ଷା ପ୍ରାପ୍ତ ଅଟନ୍ତି । ତାଙ୍କର ସହଜାତ ଆଗ୍ରହ ହେଲା — (୧) ତାଳପତ୍ରରେ ଲିଖିତ ପାଣ୍ଡୁଲିପି ଓ ପୋଥି ସଂଗ୍ରହ, ଏବଂ (୨) ତାମ୍ରଫଳକ ତଥା ସ୍ତମ୍ଭ ଓ ଶିଳା ଅନୁଶାସନ ସଂଗ୍ରହ ଓ ଅଧ୍ୟୟନ ।

ଏତାଦୃଶ ବହୁ ମହନୀୟ ଗୁଣ ଓ ମାନର ଅପୂର୍ବ ସମନ୍ୱୟ ଓ ସମାହାର ହେଲେ ମାଗୁଣି ବାବୁ । ସବୁ ଦୃଷ୍ଟିରୁ ସେ ଏକ ମହତ୍ତ୍ୱ ବ୍ୟକ୍ତିତ୍ୱ । ସୁତରାଂ ତାଙ୍କୁ କେବଳ ଏକ ବ୍ୟକ୍ତି ବିଶେଷ ନ କହି ଏକ ମହାନ ଜାତୀୟ ଅନୁଷ୍ଠାନ । ଏଣୁ ସେ ଏକାନ୍ତ ନମସ୍ୟ ଓ ବନ୍ଦନୀୟ । ଏହି ପବିତ୍ର ଅବସରରେ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ଏହି ପରିଣତ ବୟସରେ ଯୁବ ସୁଲଭ ଚିନ୍ତା ଓ ଉଦ୍ଦାମତାରେ ପୁଲକିତ ଓ ସକ୍ରିୟ ରହି ଆହୁରି ଅଧିକ ଯଶ ଓ ଗୌରବ ଅର୍ଜନ କରନ୍ତୁ—ଏହା ଆମର ଅଭିଳାଷ ଓ ପ୍ରାର୍ଥନା ।



ଅଧ୍ୟକ୍ଷ, ହିଲ୍ ପାଟଣା,
ବ୍ରହ୍ମପୁର — ୭୬୦୦୦୫
ଗଞ୍ଜାମ (ଜିଲ୍ଲା)

# ପ୍ରାବନ୍ଧିକ ଶ୍ରୀ ମାଗୁଣି ଦାଶ

ଡକ୍ଟର ବିବେକାନନ୍ଦ ପାଣିଗ୍ରାହୀ

ଆଜୀବନ ସାହିତ୍ୟସେବୀ ଶ୍ରୀଯୁକ୍ତ ମାଗୁଣି ଦାଶ ଜଣେ ସୁନାମଧନ୍ୟ ପ୍ରାବନ୍ଧିକ ଭାବେ ଓଡ଼ିଶାର ପାଠକ ପାଠିକାଙ୍କ ନିକଟରେ ସୁପରିଚିତ । ଦୀର୍ଘ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ସେ ପ୍ରବନ୍ଧ ରଚନାରେ ମନୋନିବେଶ କରିଛନ୍ତି । ନିରବଚ୍ଛିନ୍ନତାର ଅଭାବରୁ ସେ ପ୍ରବନ୍ଧ ସାହିତ୍ୟକୁ ଅଧିକ ପରିପୁଷ୍ଟ କରିପାରି ନ ଥିଲେ ବି ଗବେଷଣାମୂଳକ ପ୍ରବନ୍ଧ ରଚନା କରି ନିଜର ପ୍ରତିଷ୍ଠାକୁ ବଜାୟ ରଖିଛନ୍ତି ।

ଶ୍ରୀଯୁକ୍ତ ଦାଶ ଜଣେ ସୌଖୀନ ପ୍ରାବନ୍ଧିକ । ସେ ତାତ୍ତ୍ୱିକ ବିଷୟ କିମ୍ବା ଜଟିଳ ଭାବ ବା ଦାର୍ଶନିକତାକୁ ନେଇ ପ୍ରବନ୍ଧ ଲେଖନ୍ତି ନାହିଁ, ବରଂ ଅନାଲୋଚିତ ବସ୍ତୁ, ସ୍ଥାନ, କାବ୍ୟ, କବି, ଜନଶ୍ରୁତି ଓ କିମ୍ବଦନ୍ତୀ ଇତ୍ୟାଦିକୁ ନେଇ ପ୍ରବନ୍ଧ ଲେଖିବାରେ ବିଶେଷ ମନଯୋଗୀ ପରି ମନେ ହୁଅନ୍ତି । ଓଡ଼ିଶାର ସାଧାରଣ ପାଠକ ପାଖରେ ତାଙ୍କ ପ୍ରବନ୍ଧର ଆଦର ଖୁବ୍ ବେଶୀ । କାରଣ ତାଙ୍କ ପ୍ରବନ୍ଧର ଭାଷା ଅତ୍ୟନ୍ତ ସରଳ ଓ ରସାଳ । ସେଥିରେ କ୍ଲିଷ୍ଟତା ନାହିଁ । ମୌଳିକତାର ପ୍ରଲେପ ମଧ୍ୟ ନାହିଁ, କିନ୍ତୁ ଅଛି ତଥ୍ୟାବଳୀ ଓ ବିଷୟ ବିନ୍ୟାସର ଚମତ୍କାରିତା । ସୁତରାଂ ତାଙ୍କ ପ୍ରବନ୍ଧ ପାଠକମାନଙ୍କ ପାଇଁ ସୁଖପାଠ୍ୟ ମନେ ହୁଏ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଶ୍ରୀଯୁକ୍ତ ଦାଶ ପ୍ରବନ୍ଧ ରଚନା କ୍ଷେତ୍ରରେ ନିଜକୁ ପରିଚିତ କରାନ୍ତି ପାଠକ ସମାଜରେ । ଓଡ଼ିଶାର ସମସ୍ତ ଦୈନିକ ସମ୍ବାଦ ପତ୍ର ଯଥା—ପ୍ରଜାତନ୍ତ୍ର, ସମାଜ, ଧରିତ୍ରୀ, ସମ୍ବାଦ, ମାତୃଭୂମି, ଦୈନିକ ଆଶା ଓ ପ୍ରଗତିବାଦୀ ପ୍ରଭୃତି ପତ୍ରିକାରେ ଓଡ଼ିଶାର ଦେବଦେବୀ ଦର୍ଶନୀୟ ସ୍ଥାନ, ଲୋକ ସଂସ୍କୃତି, କିମ୍ବଦନ୍ତୀ ଐତିହାସିକ ସ୍ଥାନ, ଲୋକ ବିଶ୍ୱାସ, ପ୍ରଥା, ଚଳଣି ଇତ୍ୟାଦିକୁ ନେଇ ସେ ଶତାଧିକ ପ୍ରବନ୍ଧ ରଚନା କରିଛନ୍ତି । କେତେବେଳେ ଶୈବପୀଠ ଚକାପାଦର ଐତିହାସିକ ଉପସ୍ଥାପନା ତାଙ୍କ ପ୍ରବନ୍ଧରେ ସ୍ଥାନ ପାଇଛି ତ, ପୁଣି କେତେବେଳେ ସେ ମୁକ୍ତି ସଂଗ୍ରାମର ଧୁନ୍ଧୁମାର ଅଧ୍ୟାୟ ବିଷୟରେ ନିଜ ପ୍ରବନ୍ଧରେ ଆଲୋକପାତ କରିଛନ୍ତି ।

ଭିନ୍ନ ବିଷୟକୁ ନେଇ ପ୍ରବନ୍ଧ ରଚନା କରିଥିଲେ ବି ତାଙ୍କ ଐତିହାସିକ ପ୍ରବନ୍ଧାବଳୀ ଗବେଷଣା ଉପଯୋଗୀ ମନେ ହୁଏ । ସେହିପରି ଓଡ଼ିଶାର ଦୁର୍ଗମ ମାଳ ଅଞ୍ଚଳରେ ବସବାସ କରୁଥିବା କନ୍ଧ, ଶବର, ସଉରା ଆଦି ଅବହେଳିତ ସଂପ୍ରଦାୟର ସମାଜ ଜୀବନ, ସାମାଜିକ ବିଶ୍ୱାସ, ସଂସ୍କୃତି ଉପରେ ଆଧାରିତ ତାଙ୍କ ପ୍ରବନ୍ଧଗୁଡ଼ିକ ମଧ୍ୟ ବେଶ୍ ତଥ୍ୟପୂର୍ଣ୍ଣ ମନେହୁଏ । ଜନ ଜୀବନର ସମସ୍ତ କଙ୍କାଳ ମଧ୍ୟରେ ସେ ପ୍ରବନ୍ଧ ରଚନା ମାଧ୍ୟମରେ ଅତୀତର ହାରାଣିତ ବୃତ୍ତକୁ ଚରିତାର୍ଥ କରିବାରେ ସଦା ତତ୍ପର ।

ଶ୍ରୀଯୁକ୍ତ ଦାଶଙ୍କ ପ୍ରବଂଧ ରଚନାର ଆଦର୍ଶ ସର୍ବଦା ସ୍ପଷ୍ଟ ଓ ଉଦ୍ଦେଶ୍ୟ ମୂଳକ । ସେ ଆଲୋଚକ ବିଷୟକୁ ନେଇ ପ୍ରବନ୍ଧ ରଚନା ଦିଗରେ ବିଶେଷ ଆଗ୍ରହୀ । ତାଙ୍କ ଅନୁସଂଧାନୀ ମନ ସର୍ବଦା ଚେଷ୍ଟା କରେ ଜନମାନସରୁ ଅପସରି ଯାଇଥିବା ଲୋକକଥା, କିମ୍ବଦନ୍ତୀ ବା ଜନଶ୍ରୁତିର ପୁନରୁଦ୍ଧାର କରି ତାକୁ ପାଠକମାନଙ୍କ ନିକଟରେ ପରିବେଷଣ କରିବା ପାଇଁ । ଏହି ବିଶେଷ ରୁଚି ହିଁ ତାଙ୍କ ପ୍ରବନ୍ଧଗୁଡ଼ିକୁ ଜନପ୍ରିୟ କରିବାରେ ବିଶେଷ ସହାୟକ ହୋଇ ପାରିଛି ।

ମାଳତୀ ଗଡ଼ର ଦୀପ, ଭଞ୍ଜନଗରର ଗୁପ୍ତ ସୁଡ଼ଙ୍ଗ, ଗୁମ୍‌ସରର ବିଚିତ୍ର ପାହାଡ଼, ଚାହୁଡ଼ି ଅଇଲେ ରଜା, ଦେଖା ବୃନ୍ଦାବନେନ୍ଦୁ, ଗୌଡ଼ର ତ୍ରୈତାନ୍ତ୍ରିକ ଗୃହ ସମ୍ମୁଖ ମନ୍ଦିର ଓ ବୌଦ୍ଧ ବିହାର ଆଦି ପ୍ରବଂଧ ପାଠକ ମନରେ କୌତୂହଳର ଅଂଧକାର ମଧ୍ୟରୁ ଆଲୋକ ଛଟା ପରି ମନେ ହୁଏ । ଗଭୀର ଅନୁଶୀଳନ ବିନା ଏପରି ପ୍ରବଂଧ ସମ୍ଭବ ହୋଇପାରେନା । ଜଣେ ଇତିହାସର ଗବେଷକ ପରି ସେ ସ୍ଥାନ, ସମୟ ଓ ପୃଷ୍ଠଭୂମିର ସବିଶେଷ ଆଲୋଚନା ପ୍ରଦାନ କରିଛନ୍ତି ଏ ସବୁ ପ୍ରବଂଧରେ ।

ଐତିହାସିକ ଓ ଫିଚର ପ୍ରବଂଧ ବ୍ୟତୀତ ସେ ସାହିତ୍ୟ ସମାଲୋଚନା ଧର୍ମୀ ପ୍ରବଂଧମାନ ମଧ୍ୟ ରଚନା କରିଥିବା ଜଣାଯାଏ । ତାଙ୍କ ସଂପାଦିତ ଧନଞ୍ଜୟ ଭଞ୍ଜଙ୍କ ଶ୍ରୀକୃଷ୍ଣ କ୍ରୀଡ଼ା କାବ୍ୟର ମୁଖବଂଧ, ଦିନକୃଷ୍ଣ ଭଞ୍ଜଙ୍କ ରଚିତ କନକଲତା, ବିଦଗ୍ଧ ବଧିର ପ୍ରେମର କାବ୍ୟ ଏବଂ ପ୍ରାଥମ୍ୟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଥମ କାବ୍ୟ ଭାବବତୀ, ଅଳଙ୍କାର ପ୍ରଧାନ କାବ୍ୟ ସୁଭଦ୍ରା ପରିଣୟ, ଭକ୍ତି ସାହିତ୍ୟରେ ଅଙ୍କ କୁଟୁଜ, ରସରାଜ ଶୃଙ୍ଗାର ରସିକ ହାରାବଳୀ, ଚଉପଦୀ ଭୂଷଣ ଏକ ଅନବଦ୍ୟ ରଚନା ପ୍ରଭୃତି ପ୍ରବଂଧ ତାଙ୍କ ସାହିତ୍ୟିକ ଅଭିରୁଚି ଓ

ବିଶ୍ଳେଷଣାତ୍ମକ ସମାଲୋଚନା ଶକ୍ତିର ପରିଚାୟକ । ଜଣେ ସମୀକ୍ଷକର ଦୃଷ୍ଟି ଓ ରୁଚିକୁ ନେଇ ସେ ବିଭିନ୍ନ କାବ୍ୟର ଆଲୋଚନା କରିଛନ୍ତି । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ଓ ରୁଚି ଏଥିରୁ ସ୍ପଷ୍ଟ ଅନୁମିତ ହୋଇଥାଏ ।

ପ୍ରାବନ୍ଧିକ ଶ୍ରୀ ଦାଶ ଜୀବନୀ ମୂଳକ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଭିନ୍ନ ଭିନ୍ନ ସମୟରେ ପ୍ରକାଶିତ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ଉପରେ ଆଧାରିତ ସ୍ୱତନ୍ତ୍ର ସଂଖ୍ୟା, ଶତବାର୍ଷିକୀ ସ୍ମରଣିକା, ଅଭିନନ୍ଦନ ଗ୍ରନ୍ଥମାନଙ୍କରେ ସେ ସ୍ମୃତିଚାରଣ ମୂଳକ ବହୁ ପ୍ରବନ୍ଧ ଲେଖିଛନ୍ତି । ଶ୍ରୀନନ୍ଦ ପଣ୍ଡା, ଗଙ୍ଗାଧର ମେହେର, କୃଷ୍ଣଚନ୍ଦ୍ର ଗଜପତି, ଚନ୍ଦ୍ର ଷଡ଼ଙ୍ଗୀ, ଡୋନ୍ତ୍ର ହଟସ୍ୱାମୀ, ଶଶୀ ଭୂଷଣ ରଥ, ଦିବାକର ପଟ୍ଟନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଚକ୍ରପାଣି ପ୍ରଧାନ, ବ୍ରଜରାଜ ସିଂହଦେଓ ପ୍ରଭୃତିଙ୍କ ଉପରେ ପ୍ରବନ୍ଧମାନ ରଚନା କରିଛନ୍ତି ।

ଶ୍ରୀ ଦାଶଙ୍କ ପ୍ରାବନ୍ଧିକ ବ୍ୟକ୍ତିତ୍ୱର ପରିଚୟ ମିଳିଥାଏ ତାଙ୍କ ଗବେଷଣା ପତ୍ରିକା ବର୍ଦ୍ଧନ, ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପ୍ରକାଶିତ ସପ୍ତର୍ଷି, ବ୍ରହ୍ମପୁରରୁ ପ୍ରକାଶିତ ସେବକ, ଫୁଲବାଣୀରୁ ପ୍ରକାଶିତ ବନମାଳା ଓ ଉପସିତା, କଳାହାଣ୍ଡିରୁ ପ୍ରକାଶିତ ଗିରିଶୃଙ୍ଗ, ଚାନ୍ଦିହିରୁ ପ୍ରକାଶିତ ରୂପାୟନ, ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରକାଶିତ ଉତ୍କଳ ପ୍ରସଙ୍ଗ ଓ ନରେନ୍ଦ୍ର ଭଞ୍ଜ କଳାଚକ୍ର ଏକାଡ଼େମୀ ଦ୍ୱାରା ପ୍ରସ୍ତୁତ ଗବେଷଣାଧର୍ମୀ ସଙ୍କଳନମାନଙ୍କରେ ଏବେ ବି ପରିଣତ ବୟସରେ ପ୍ରବନ୍ଧ ରଚନା ଦିଗରେ ସେ ସକ୍ରିୟ ଥିବା ଲକ୍ଷ୍ୟ କରାଯାଏ । ତାଙ୍କ ସ୍ୱାତନ୍ତ୍ର ବ୍ୟକ୍ତିତ୍ୱର ଆକଳନ ଦୃଷ୍ଟିରୁ ପ୍ରବନ୍ଧ ସାହିତ୍ୟର ସଫଳତା ତାଙ୍କୁ ପ୍ରତିଷ୍ଠା ପ୍ରଦାନ କରିଛି କହିବା ବାହୁଲ୍ୟ ମାତ୍ର ।



ବରିଷ୍ଠ ଅଧ୍ୟାପକ
ଭଞ୍ଜନଗର ମହାବିଦ୍ୟାଳୟ
ଭଞ୍ଜନଗର

# ଅପୂର୍ବ ଜାତୀୟତାର ମୂର୍ତ୍ତ ପ୍ରକାଶ–
# ମାଗୁଣି ଦାସ

**ଶ୍ରୀ ହୟଗ୍ରୀବ ତ୍ରିପାଠୀ**

ବିଭିନ୍ନ ପରିବେଷ୍ଟନୀକୁ ଆୟତ୍ତ କରିପାରୁଥିବା ଜୀବର ନାମ 'ମନୁଷ୍ୟ'। 'ନହି ମାନୁଷ୍ୟାତ୍ ଶ୍ରେଷ୍ଠତରଂ ହି କିଞ୍ଚିତ୍' ମନୁଷ୍ୟ ଜନ୍ମ ଦୁର୍ଲଭ। ସ୍ମୃତି କହେ 'ଦୁର୍ଲଭ ମାନୁଷଂ ଜନ୍ମ' ଜନ୍ମ ହେବା ମାତ୍ରେ ଆମେ ସମସ୍ତେ ମନୁଷ୍ୟ, ମନୁଷ୍ୟ ଭିତରେ ରହିଛି ବ୍ୟକ୍ତିତ୍ୱ। ସେହି ବ୍ୟକ୍ତିତ୍ୱ ବିକାଶ ମହାର୍ଘ ବସ୍ତୁ। ତାକୁ ଉପଲବ୍ଧି କରି-ପାରିଲେ ଅଥବା ବ୍ୟକ୍ତ କରି ପାରିଲେ ମନୁଷ୍ୟ ହୁଏ ବ୍ୟକ୍ତି। ସମସ୍ତ ବ୍ୟକ୍ତି ମନୁଷ୍ୟ କିନ୍ତୁ ସମସ୍ତ ମନୁଷ୍ୟ ବ୍ୟକ୍ତି ହୋଇ ନ ପାରନ୍ତି। ସମାଜରେ ବ୍ୟକ୍ତିଙ୍କ ସ୍ଥାନ ଉଚ୍ଚରେ ଏମାନେ ହିଁ ଗାନ୍ଧି, ନେହେରୁ, ଗୋପବନ୍ଧୁ, ଉପେନ୍ଦ୍ରଭଞ୍ଜ, ବୀର ନକର ଇତ୍ୟାଦି। ଏମାନଙ୍କ ମନୁଷ୍ୟ ଜନ୍ମ ଦୁର୍ଲଭତର, ସାର୍ଥକ, ଏପରି ଏକ ଦୁର୍ଲଭତର ଜନ୍ମ ଲାଭ କରିଥିବା ବ୍ୟକ୍ତି ହେଉଛନ୍ତି ମାଗୁଣି ଦାସ। ନିଜ ପାଇଁ ଜୀଇଁବା ସାଧାରଣ ଜୀବନ, କିନ୍ତୁ ଯେଉଁ କେତେ ଜଣ ପର ପାଇଁ ଜୀଅଁନ୍ତି ସେମାନଙ୍କ ମଧ୍ୟରେ ଅଛନ୍ତି ମାଗୁଣି ଦାସ। ସେ ଜୀବନ ଅସାଧାରଣ। ଆଧ୍ୟାତ୍ମିକତା ଦୃଷ୍ଟିରୁ ସେ ସାଧୁ, ଭାବାତ୍ମକ, ଅଭାବାତ୍ମକ ଭେଦରେ ସାଧୁ ଦୁଇ ଶ୍ରେଣୀର। ସାଧୁ ଈଶ୍ୱରସାଧନା କରି ନିଜର ଅଭ୍ୟୁଦୟ ସାଧନରତ ହୁଅନ୍ତି। ଆଉ ଏକ ଶ୍ରେଣୀର ସାଧୁ ଅଛନ୍ତି ଯେଉଁମାନେ ମାନବ ସେବା ହିଁ ମାଧବ ସେବା ମନେ କରି ସମାଜ ସେବା ପାଇଁ ନିଜକୁ ଉତ୍ସର୍ଗ କରିଦିଅନ୍ତି। ଏହି ଶ୍ରେଣୀର ସାଧୁ ମାଗୁଣି ଦାସ। ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ସେ ଦେଶମାତୃକାର ପରମ ଭକ୍ତ। ଦେଶ ସ୍ୱାଧୀନ ହେଲା– କିନ୍ତୁ ସାମାଜିକ ସ୍ୱାଧୀନତା ଆନୟନ ପାଇଁ ଦୁମୁଦରିବ ଯେଉଁ କେତେ ଜଣ ସର୍ବସ୍ୱ ତ୍ୟାଗ କରିଛନ୍ତି ସେମାନଙ୍କ ମଧ୍ୟରେ ମାଗୁଣି ଦାସ ଅନ୍ୟତମ। ମାତୃଭୂମିର ସେବା ସାଙ୍ଗକୁ ମାତୃଭାଷାର ସେବାରେ ସେ ତତ୍ପର। ଏ ମାଟି ସାଧାରଣ ମାଟି ନୁହେଁ। 'ଦେହି ଦେଇ ଦେଲେ ମାଟି କଣ ଏଠି, ମିଳିବ ଉପେନ୍ଦ୍ର କାବ୍ୟ କଳାକୁଞ୍ଜ'। ଲୋକଲୋଚନ ଅନ୍ତରାଳରେ ଥିବା ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକବିତା ସଂଗ୍ରହ କରି ସେ ସବୁକୁ ପ୍ରକାଶ କରାଇଛନ୍ତି। ନିଜ ଉଦ୍ୟମରେ। ଆର୍ଥିକ ଦୁଃସ୍ଥିତିକୁ ଭ୍ରୂକ୍ଷେପ ନ କରି ସେ ସବୁ ଛପାଇଛନ୍ତି। ଯେଉଁଠିକି ଗଲେ କାନ୍ଧରେ ଝୁଲିମୁଣି। ତା ଭିତରେ ଭଞ୍ଜଙ୍କର କବିତା ସଂକଳନ। ବର୍ଷ ବର୍ଷ

ଧରି ଭଞ୍ଜନଗରଠାରେ ଭଞ୍ଜଜୟନ୍ତୀ ସମାବେଶ ଆୟୋଜନ କରାଇଛନ୍ତି । ସ୍ୱକୀୟ ଜୀବନରେ ଲୋକ ସଂପର୍କ ରକ୍ଷା କରି ଓଡ଼ିଆ ଭାଷା, ସାହିତ୍ୟ ପାଇଁ ଯାହା କରି ଯାଉଛନ୍ତି, ତାର ପଟାନ୍ତର ନାହିଁ । ଉପେନ୍ଦ୍ର ଭଞ୍ଜ, ବୀର ଚକରା, ଦେବ ହଷ ବଂଶୋଧ୍ୱୀଙ୍କ ସେ ଉପଯୁକ୍ତ ଦାୟାଦ । ଏମାନେ ସାଧକ । ସାଧକ କର୍ମ କରିଯାନ୍ତି, କିନ୍ତୁ ଉତ୍ତର ସାଧକ ବିନା ସେମାନଙ୍କ ସାଧନା ଲୋକଲୋଚନ ଅନ୍ତରାଳରେ ରହିଥାଏ । ଉତ୍ତର ସାଧକ ହିଁ ସାଧକଙ୍କ ସାଧନା ପ୍ରସୂତ ରତ୍ନରାଜିକୁ ସମାଜର ହିତ ଉଦ୍ଦେଶ୍ୟରେ ବିନିଯୁକ୍ତ କରନ୍ତି । ମାରୁଣି ଦାଶ ଏ ଦୃଷ୍ଟିରୁ ଜଣେ ଚିର ନମସ୍ୟ ଉତ୍ତର ସାଧକ । ଗାନ୍ଧିଜୀଙ୍କ ପଟ୍ଟଶିଷ୍ୟ—ଗାନ୍ଧିବାଦୀ ଆଚରଣରେ ଗାନ୍ଧିତୁ—ଦିନଚର୍ଯ୍ୟାରେ ଗାନ୍ଧିଜୀଙ୍କ ପ୍ରୟୋଗରେ ଧୂରନ୍ଧର, ଖଦଡ଼ ପୋଷାକ ପରିହିତ ବ୍ୟକ୍ତି, ମୁହଁରେ ସବୁବେଳେ ଚେନାଏ ହସ—ବନ୍ଧୁମେଳରେ ଉତ୍ତମ ବନ୍ଧୁ—ଜ୍ଞାନୀ ମେଳରେ ନମ୍ର । ସମାଜର ଉଚ୍ଚ ନୀଚ କର୍ମ ମଧ୍ୟରେ ସୁଦୃଢ଼ ସେତୁ ସିଏ—ବହୁମୁଖୀ ପ୍ରତିଭାର ଅଧିକାରୀ । ସେହି ବ୍ୟକ୍ତିତ୍ୱର ମୁଁ ବା କି ମୂଲ୍ୟାୟନ କରିବି ? ମୋର ଇଷ୍ଟଦେବ ଜ୍ଞାନ ବ୍ରହ୍ମମୂର୍ତ୍ତି ରାମଚନ୍ଦ୍ରଙ୍କ ପ୍ରାର୍ଥନା କରୁଛି—ତାଙ୍କରି କୃପା ବଳରେ ସାଧକ ଦୀର୍ଘଜୀବନ ଲାଭ କରି, ସଦା ଚଞ୍ଚଳ ରହି ଦେଶ, ସମାଜ, ସାହିତ୍ୟର ସେବା କରି ଚାଲନ୍ତୁ । ତାଙ୍କରି କରୁଣାରୁ ସାଧକଙ୍କ ପଙ୍କ-ବିମୁକ୍ତ ଲଲାଟ ଚନ୍ଦନାକ୍ତ ହେଉ । ଇତିଶମ୍ ।



ରାଜ୍ୟ ପୁରସ୍କାର ପ୍ରାପ୍ତ ପ୍ରଧାନ ଶିକ୍ଷକ,
ବେଲଗୁଣ୍ଠା

# ସ୍ମୃତିରୁ ପାଖୁଡ଼ାଏ

ଡ଼ଃ. ଶ୍ୟାମସୁନ୍ଦର ଡାଙ୍ଗୁଆ

ପ୍ରାକ୍ ସ୍ୱାଧୀନତା କାଳରେ ଦେଶରେ ଦେଖାଦେଇଥିବା ସତ୍ୟାଗ୍ରହ ଆନ୍ଦୋଳନକୁ ସାକାର କରିବା ସହ ମହାତ୍ମା ଗାନ୍ଧୀ, ନେହେରୁଙ୍କ ମହତ୍ୱାକାଂକ୍ଷାକୁ ସଫଳ ରୂପାୟନ ଦେବା ଉଦ୍ଦେଶ୍ୟରେ ଗଞ୍ଜାମ ଜିଲ୍ଲାର ସହସ୍ରାଧିକ କର୍ମୀ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ଆଞ୍ଚଳିକ ଭିତ୍ତିରେ ଏହି କର୍ମୀମାନଙ୍କ ଶିବିର ମାନ ସ୍ଥାପନ ହୋଇଥିଲା । ଯାହାକୁ କି ପରବର୍ତ୍ତୀ ସମୟରେ ଆଶ୍ରମ ନାମରେ ନାମିତ କରାଗଲା । ସେହି ସ୍ମରଣୀୟ ବ୍ୟକ୍ତି ବିଶେଷଙ୍କ ମଧ୍ୟରୁ ମାଗୁଣି ଦାସ ଅନ୍ୟତମ । ସନ୍ ୧୯୩୪-୩୬ରେ ବାଞ୍ଛାନିଧି ପଟ୍ଟନାୟକ ଓ ଦୀନବନ୍ଧୁ ବେହେରାଙ୍କ ଉଦ୍ୟମରେ ଗୋବରପଠାରେ, ନରସିଂହ ବଡ଼େଇ, ପୁରୁଷୋତ୍ତମ ଡାଂଗୁଆ, ଗୌରାଙ୍ଗ ସାହୁ, ମାଗୁଣି ପ୍ରଧାନ, କାଶୀନାଥ ପଟ୍ଟନାୟକଙ୍କ ଉଦ୍ୟମରେ କରଡ଼ାବାଡ଼ିଠାରେ, ଓ ମାଗୁଣି ଦାସ ଓ ହରିହର ପାଣିଗ୍ରାହୀଙ୍କ ଉଦ୍ୟମରେ ସନ୍ ୧୯୩୬ରେ ଭୁମୁଷର ଗଡ଼ କୁମ୍ଭାଡ଼ାଠାରେ ଗୋଟିଏ ଆଶ୍ରମ ସ୍ଥାପନ ହୋଇଥିଲା । ଯଦିଓ ଏହାର ମୁଖ୍ୟ କାର୍ଯ୍ୟାଳୟ ଥିଲା କରଡ଼ାବାଡ଼ି ।

ଓଡ଼ିଶାରେ ସ୍ୱରାଜ୍ୟ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ଲାଗି ପଣ୍ଡିତ ଜବାହାରଲାଲ୍ ନେହେରୁ ୧୯୩୬ ମସିହାରେ ବ୍ରହ୍ମପୁରଠାରେ ଏକ ସାଧାରଣ ସଭାରେ ତାଙ୍କର ଓଜସ୍ୱିନୀ ଭାଷଣ ଦେଇଥିଲେ । ସେହିଥିରେ କି ସ୍କୁଲ, କଲେଜର ଛାତ୍ରଙ୍କୁ ଯୋଗଦେବା ପାଇଁ ସମ୍ପୂର୍ଣ୍ଣ ନିଷେଧ କରାଯାଇଥିଲା । କିନ୍ତୁ ବହୁ ଛାତ୍ର, ଛାତ୍ରୀ ଛାତ୍ରାବାସର ପାଚେରୀ ଡେଇଁ ସେହିଥିରେ ଯୋଗ ଦେଇଥିଲେ । ଫଳସ୍ୱରୂପ ସେମାନଙ୍କୁ ଅଧ୍ୟୟନରୁ ବଞ୍ଚିତ କରାଗଲା । ସେହି ଛାତ୍ରମାନଙ୍କ ମଧ୍ୟରୁ ସ୍ୱର୍ଗୀୟ ଶ୍ରୀଯୁକ୍ତ ନରସିଂହ ବଡ଼େଇ ଅନ୍ୟତମ । ଜଣେ ସ୍ୱଦେଶୀ ତଥା ମେଧାବୀ ଛାତ୍ର ହୋଇଥିଲେ ହେଁ ସେ ପାଶ୍ଚାତ୍ୟ ଶିକ୍ଷାକୁ ସମାଲୋଚନା କରି ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । କଲେଜରୁ ବହିଷ୍କୃତ ହେବା ପରେ ସେ ଫେରି ଆସିଲେ ତାଙ୍କ ଜନ୍ମମାଟି କରଡ଼ାବାଡ଼ିକୁ । ସେଠାରେ ସେ ପୁରୁଷୋତ୍ତମ ଡାଂଗୁଆ, ଗୌରାଙ୍ଗ ସାହୁ ଇତ୍ୟାଦିଙ୍କ ସହଯୋଗରେ ଇଂରେଜ

ସରକାରଙ୍କ ବିରୁଦ୍ଧରେ ପ୍ରଚାର କରିଥିଲେ । ପରେ ପରେ ସେହି ଅଞ୍ଚଳରେ ଆଉ ଜଣେ ସ୍ୱାଧୀନତା ସଂଗ୍ରାମୀ (ମାଟୁଣି ପ୍ରଧାନ ଓ କାଶୀନାଥ ପଟ୍ଟନାୟକ) ଯୋଗ ଦେଇଥିଲେ । ପ୍ରତ୍ୟେକ ଏହି ବ୍ୟକ୍ତି ବିଶେଷମାନେ ଗାଁକୁ ଗାଁ ବୁଲି ବିଦେଶୀ ଦ୍ରବ୍ୟ ବର୍ଜନ; ସ୍ୱଦେଶୀ ପରିଧାନ, ଘରେ ଘରେ ଚକ୍ର ଓ ଅରଟ ଚଲାଇବା ପାଇଁ ଉତ୍ସାହ ପ୍ରଦାନ କରିଥିଲେ । ସନ୍ ୧୯୩୫ ସାଲରେ କନ୍ଦୁଡ଼ାବାଡ଼ି ଗ୍ରାମଠାରୁ ଅନତି ଦୂରରୁ ଜାତୀୟ ସଡ଼କ କଡ଼ରେ ଏକ ଏକର ପରିମିତ ସ୍ଥାନରେ ଗୋଟିଏ ଆଶ୍ରମ ସ୍ଥାପନ କରାଯାଇଥିଲା । ଏହାର କିଛି ମାସ ପରେ ଆଉ ୨ଟି ଆଶ୍ରମ ଯଥାକ୍ରମେ ଦଣ୍ଡାଧି ପଟ୍ଟନାୟକ ଓ ଦୀନବନ୍ଧୁ ବେହେରାଙ୍କ ଉଦ୍ୟମରେ ଗୋବିନ୍ଦପୁରଠାରେ ଓ ମାଗୁଣି ଦାଶ, ହରିହର ପାଣିଗ୍ରାହୀଙ୍କ ଉଦ୍ୟମରେ କୁଲଡ଼ଠାରେ ସ୍ଥାପନ କରାଯାଇଥିଲା ।

ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ଏହି କାର୍ଯ୍ୟାଳୟର ନାମ ସୁବିଦିତ ଥିଲା । ଯେଉଁ କର୍ମୀମାନେ ଜାତୀୟ ସ୍ତରରେ ନେତାମାନଙ୍କ ସହ ଯୋଗାଯୋଗ ରଖି ବିଭିନ୍ନ ସମୟରେ ସେମାନଙ୍କଠାରୁ ବାର୍ତ୍ତା ସଂଗ୍ରହ କରି ଦୂରଦୂରାନ୍ତ ଲୋକଙ୍କ ନିକଟରେ ପହଞ୍ଚାଉଥିଲେ, ତନ୍ମଧ୍ୟରେ ମାଗୁଣି ଦାଶ ପ୍ରମୁଖ ଥିଲେ । ଜଣେ ନିର୍ଭୀକ ନିଷ୍ଠାପର ଦେଶପ୍ରେମୀ ଭାବେ ସେ ସର୍ବଜନ ସୁପରିଚିତ । କୁଲଡ଼ ତଥା ଫୁଲବାଣୀ ଜିଲ୍ଲାର କୋଣ ଅନୁକୋଣରେ ସେ ଦେଶପ୍ରେମ ବାର୍ତ୍ତା ପ୍ରଚାର କରିଥିଲେ । ଏଥିପାଇଁ ତାଙ୍କୁ ଅନେକ ଘୁଂଚ ମ, ବନ୍ଧୁର ପଥ ଅତିକ୍ରମ କରିବାକୁ ପଡ଼ିଥିଲା ।

୧୯୪୧ ମସିହାର ପ୍ରଥମ ପର୍ଯ୍ୟାୟରେ ଯେତେବେଳେ ଆଶ୍ରମ କନ୍ଦୁଡ଼ାବାଡ଼ିଠାରେ ଏକ ସାଧାରଣ ସଭାର ଆୟୋଜନ କରାଯାଇଥିଲା, ସେତେବେଳେ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ପ୍ରଥମ ଥର ପାଇଁ ଏହି କାର୍ଯ୍ୟାଳୟକୁ ଆସି ସ୍ଥାନୀୟ ଅଧିବାସୀଙ୍କୁ ଦେଶପ୍ରେମ ଉଦ୍‌ବୋଧନ ଦେଇଥିଲେ । ଏହା ପରେ ପରେ ହରେକୃଷ୍ଣ ମହତାବ ପରବର୍ତ୍ତୀ ସାଧାରଣ ସଭାରେ ଯୋଗଦେଇ ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ପହଞ୍ଚାଇଥିଲେ । ଶ୍ରୀଯୁକ୍ତ ମହତାବଙ୍କ ଉଦ୍ୟମରେ ଆଶ୍ରମର ୨ ଜଣ ସଂଗ୍ରାମୀ ବନ୍ଧୁ (ପୁରୁଷୋତ୍ତମ ଡ଼ାଂଗୁଆ, ଓ କାଶୀନାଥ ପଟ୍ଟନାୟକଙ୍କୁ) କଟକ ମଧୁସୂଦନ ଗ୍ରାମୋଦ୍ୟୋଗ ମନ୍ଦିରକୁ ତାଲିମ୍ ପାଇଁ ପଠାଗଲା । ସେମାନେ କଟକରେ ପାଖ ଏକ ବର୍ଷ ରହି କାଗଜ ତିଆରି, ସାବୁନ ତିଆରି, ତେଲପେଡ଼ା, ସୂତାକଟା ଇତ୍ୟାଦିରେ ଉପଯୁକ୍ତ ତାଲିମ ପାଇ ଆଶ୍ରମରେ ଆସି ଯୋଗଦେଲେ ।

୧୯୪୧ ରେ ଆଶ୍ରମର ଜଣେ ଦକ୍ଷିଣ୍ୟକର୍ମୀ (ନରସିଂହ ବଡେଇ)ଙ୍କ ଅକାଳ ବିୟୋଗ ଘଟିଥିଲା । ଗୋଟିଏ ପଟରେ ଯେତେବେଳେ ଶୋକର ବିଭୀଷିକା ଖେଳି ଯାଇଥିଲା, ଅନ୍ୟ ପଟରେ ଅନେକ କର୍ମୀ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ । ୧୯୪୨ ସାଲରେ ପୋଲିସର ସହାୟତାରେ ତତ୍‌କାଳୀନ ଇଂରେଜ ସରକାର ଆଶ୍ରମକୁ ବାଜ୍ୟାପ୍ତ କଲେ । ଏତେ ଗୁରୁତ୍ୱ ଦୁର୍ଘଟଣା ଆଶ୍ରମବାସୀଙ୍କ ମନୋବଳ ଭାଙ୍ଗିବା ପାଇଁ ଯଥେଷ୍ଟ ଥିଲା କିନ୍ତୁ ଆଶ୍ରମବାସୀ ପୂର୍ବାପେକ୍ଷା ଦେଶ ସେବାରେ ଦ୍ୱିଗୁଣ ଅଧିକ ଉତ୍ସାହରେ ଇଂରେଜ ସରକାରଙ୍କୁ ବିରୋଧ କରିଥିଲେ । ଜେଲ୍ ଯାଇଥିବା ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ପୁରୁଷୋତ୍ତମ ଡାଂଗୁଆ, ଗୌରାଙ୍ଗ ସାହୁ, ଘନଶ୍ୟାମ ପ୍ରଧାନ, କାଶୀନାଥ ପଟ୍ଟନାୟକ, ମାଗୁଣି ପ୍ରଧାନ, ଗଦାଧର ଜେନା ପ୍ରମୁଖ ଥିଲେ । ଏ ସମୟରେ ଶ୍ରୀଯୁକ୍ତ ମାଗୁଣି ଦାଶ କୁଳଡ ଅଞ୍ଚଳରେ ଇଂରେଜ ଆଇନ ଭଙ୍ଗ କାର୍ଯ୍ୟ କରିବା ଅଭିଯୋଗରେ ଦଣ୍ଡିତ ହୋଇଥିଲେ । କଏଦୀ ଜୀବନ ଅବସରରେ ସେ ଏକ ଲେଖା (କଏଦୀର ଜୀବନ) ରଚନା କରିଥିଲେ । କଂଗ୍ରେସ ତଥା ନିଷ୍ଠାପର ସଂଗ୍ରାମୀ ବ୍ୟତୀତ ସେ ଏକ ସୁପରିଚିତ କୃତୀ ସାହିତ୍ୟିକ ମଧ୍ୟ ଥିଲେ ।

ଭଞ୍ଜ ମାଟିର ସନ୍ତାନ ଭାବେ ସେ ଉପେନ୍ଦ୍ର ଭଞ୍ଜଙ୍କୁ କେବେହେଁ ଅସ୍ୱୀକାର କରି ନାହାନ୍ତି । ଭଞ୍ଜଙ୍କ ବଂଶାନୁଚରିତ ତଥା ରଚନାବଳୀକୁ ସେ ନିଜ ସାରସ୍ୱତ ସାଧନାର ଅନ୍ୟତମ ପ୍ରମୁଖ ଅଙ୍ଗ ଭାବେ ଗ୍ରହଣ କରିଛନ୍ତି । ତାଙ୍କ ସାହିତ୍ୟ ସୃଷ୍ଟି ମଧ୍ୟରେ ଗୋପବନ୍ଧୁଙ୍କ ସ୍ମୃତି (କବିତା), ପ୍ରେମର ପରିଣାମ (ଉପନ୍ୟାସ) ଭଞ୍ଜ ବଂଶାନୁଚରିତ (୨ୟ ସଂସ୍କରଣ), ଭଞ୍ଜ ବଂଶ ଉପରେ ଆଧାରିତ ଭଞ୍ଜ ବଂଶ ଓ ଗୁମୁସର ବିଦ୍ରୋହ, ଭଞ୍ଜବଂଶାବଳୀ ଓ କମ୍ପଦର୍ପୀରେ ଭଞ୍ଜ, ଗଡ଼ଗ୍ରାମର ସମସ୍ତ ସ୍ୱାଧୀନତା ସଂଗ୍ରାମୀଙ୍କ ଫୋଟ ଓ ସଂକ୍ଷିପ୍ତ ଜୀବନୀ ଅନ୍ୟତମ । ଜଣେ ସାହିତ୍ୟିକ ବ୍ୟତୀତ ସମ୍ପାଦକ ଭାବେ ମଧ୍ୟ ଓଡ଼ିଆ ସାହିତ୍ୟରେ ତାଙ୍କର ଯଥେଷ୍ଟ ଅବଦାନ ରହିଛି । ଭଞ୍ଜଙ୍କ ସମ୍ପର୍କିତ ବହୁ ଦୁଷ୍ପ୍ରାପ୍ୟ ତଥ୍ୟାବଳୀକୁ ସେ ତାଳପତ୍ର ପୋଥୀରୁ ସଂଗ୍ରହିତ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଏହି ସାଧୁ ଉଦ୍ୟମ ପାଇଁ ସେ ସହୃଦୟ ଧନ୍ୟବାଦାର୍ହ ।



ଅଧ୍ୟାପକ, ଓଡ଼ିଆ ବିଭାଗ
ଜଗନ୍ନାଥ ମହାବିଦ୍ୟାଳୟ
ଗଲିକିଆ, ଫୁଲବାଣୀ

# କାଳଜୟୀ ମାଗୁଣି ବାବୁ

**ପୂର୍ଣ୍ଣଚନ୍ଦ୍ର ମିଶ୍ର**

ଆତ୍ମନିଷ୍ଠା, ଜାତୀୟତାବୋଧ, ମାତୃଭାଷା ଓ ମାତୃଭୂମି ପ୍ରତି ଉତ୍ସର୍ଗୀକୃତ ମନୋଭାବ ଏକ ଦେଶର ପ୍ରତିଷ୍ଠା ଓ ଗୌରବର ମୂଳ ନିଦାନ। ମହାତ୍ମା ଗୋଖଲେ ଥରେ ଲାଜପତ ରାୟଙ୍କୁ ପରାମର୍ଶ ଦେଇ କହିଥିଲେ ଯେ ତୁମେ ନିଷ୍ଠାର ସହିତ ଦେଶ ଓ ଜାତିପାଇଁ କାମ କର, ତାର ପ୍ରତିଦାନରେ କିଏ କଅଣ ତମକୁ ଦେଲା ସେଥିପ୍ରତି ଦୃଷ୍ଟିପାତ କର ନାହିଁ। ପ୍ରସଂଗକ୍ରମେ ସେ ରାମାୟଣର ଗୁଣ୍ଡିଚ ମୂଷା ଉପାଖ୍ୟାନଟି ଶୁଣାଇଥିଲେ। ଗୁଣ୍ଡିଚ ମୂଷାର ସେତୁବନ୍ଧ ନିର୍ମାଣରେ ଯୋଗଦାନ ପାଇଁ ସେ ଯେ ଦିନେ ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ପ୍ରଶଂସିତ ହେବ ଏକଥା ସେ କେବେ ଭାବି ନଥିଲା। କିନ୍ତୁ ଅପର ପକ୍ଷରେ ମହାନ୍ ଗୁଣଗ୍ରାହୀ ଶ୍ରୀରାମ ସାଧାରଣ ଗୁଣ୍ଡିଚମୂଷାଟିର ଅବଦାନକୁ ମଧ୍ୟ ହିସାବକୁ ନେଇଥିଲେ। ଆଲୋଚ୍ୟ ପ୍ରସଙ୍ଗରେ ଗଞ୍ଜାମର ଜଗନ୍ନାଥ ପ୍ରସାଦ ନିକଟ ଜଗନ୍ନାଥପୁର ଶାସନରେ ଜନ୍ମ ହୋଇ ସ୍ୱକର୍ମ, ନିଷ୍ଠା ଓ ସାଧନା ବଳରେ କାଳଜୟୀ ପ୍ରତିଭାର ବିକାଶ ମାଗୁଣି ବାବୁଙ୍କ ଜୀବନରେ ବହୁ ଘଟଣା ଓ ଅଘଟଣା ମଧ୍ୟରେ ଯେଉଁ ଜୀବନଚର୍ଯ୍ୟା ସାଧାରଣ ଲୋକଲୋଚନକୁ ଆସିନାହିଁ ତାର ଝଲକ ଦୃଷ୍ଟିପାତକୁ ଅଣାଯାଉଛି। ଉକ୍ତ ମାଟିର କୃତୀ ସନ୍ତାନ ମାଗୁଣି ବାବୁ ଭଞ୍ଜ ସାହିତ୍ୟର ଜଣେ ବରିଷ୍ଠ ଗବେଷକ, ସଂକଳକ, ସ୍ୱାଧୀନତା ସଂଗ୍ରାମୀ, ନିର୍ଭୀକ ସମାଲୋଚକ, ଜନସେବୀ, ପରୋପକାରୀ ଭାବେ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ନିଜକୁ ଉତ୍ସର୍ଗୀକୃତ ଭାବେ ସାହିତ୍ୟ ଓ ଜନତାର ସେବା କରି ଆସିଛନ୍ତି ଏହା ଚିର ଦିନ ପାଇଁ ଅମ୍ଳାନ ରହୁ ଏତିକି କାମନା।

ସ୍ୱାଧୀନତା ସଂଗ୍ରାମୀ ମାଗୁଣି ବାବୁ ଜଗନ୍ନାଥ ପ୍ରସାଦ ନିକଟ ଜଗନ୍ନାଥପୁର ଶାସନରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରି, ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନରେ ଅନୁପ୍ରାଣିତ ହୋଇ ୧୯୩୬ ମସିହାରେ ପାଠପଢ଼ା ଛାଡ଼ି କଂଗ୍ରେସରେ ଯୋଗ ଦେଇଥିଲେ। ସେ ବିଶ୍ୱନାଥ ଦାଶ, ନିରଞ୍ଜନ ପଟ୍ଟନାୟକ, ଏବଂ ମୋହନ ଦାଶଙ୍କ ଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇ କଂଗ୍ରେସର ଜଣେ ସକ୍ରିୟ ସୈନିକ ଭାବେ ଯୋଗ ଦେଇଥିଲେ। ସେ ଜଗନ୍ନାଥ ପ୍ରସାଦ ଅଞ୍ଚଳରେ ଗାଁ ଗାଁ ବୁଲି କଂଗ୍ରେସ ପାଇଁ ଚାରିଅଣିଆ ସଭ୍ୟ ସଂଗ୍ରହ କରିବା ସଙ୍ଗେ ସଙ୍ଗେ କଂଗ୍ରେସ୍ ବାର୍ତ୍ତା ପ୍ରଚାର କରୁଥିଲେ।

ସେତେବେଳେ ଯେଉଁଠି ଘର ପୋଡ଼ି, ମରୁଡ଼ି, ବନ୍ୟା ଓ ହଇଜା ଦ୍ୱାରା ଲୋକେ ବିପଦରେ ପଡ଼ିଥିବାର ଖବର ପାଇଲେ ସେ ସଙ୍ଗେ ସଙ୍ଗେ ସେଠାରେ ପହଞ୍ଚି ନିଜର ଶକ୍ତିମତେ ଲୋକଙ୍କୁ ସାହାଯ୍ୟ କରୁଥିଲେ । ସେ ଜଗନ୍ନାଥ ପ୍ରସାଦ ବିଶ୍ୱନାଥ ସେବା ସମିତିର ସଂପାଦକ ଭାବେ ନିର୍ବାଚିତ ହୋଇଥିଲେ ।

୧୯୩୯ ମସିହାରେ ଗଞ୍ଜାମ ଜିଲ୍ଲା ପୁରୁଷୋତ୍ତମପୁର ନିକଟ ଭୁତପରସିଙ୍ଗିଠାରେ ଗୋଟିଏ ସତ୍ୟାଗ୍ରହ ତାଲିମ ଶିବିର ଖୋଲା ଯାଇଥିଲା । ଏଥିରେ ସତ୍ୟାଗ୍ରହୀମାନଙ୍କୁ ମହାତ୍ମାଗାନ୍ଧୀଙ୍କ ଗଠନମୂଳକ କାର୍ଯ୍ୟକ୍ରମ ଏବଂ ଇଂରେଜ ସରକାରଙ୍କ ସହିତ ଅସହଯୋଗ ନେଇ ଓଡ଼ିଶାର ବହୁ ବଡ଼ ବଡ଼ ନେତା ଆସି ତାଲିମ ଦେଇଥିଲେ । ମାଗୁଣି ବାବୁ ଏହି ତାଲିମ କେନ୍ଦ୍ରରେ ଯୋଗ ଦେଇ ତାଲିମ ଗ୍ରହଣ କରିଥିଲେ ।

୧୯୩୯ ମସିହାରେ ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶ କ୍ରମେ ଯେଉଁ ଯେଉଁ ପ୍ରଦେଶରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରାଯାଇଥିଲା, ସେହି ସବୁ ପ୍ରଦେଶର ମୁଖ୍ୟ ମନ୍ତ୍ରୀମାନେ ଇସ୍ତଫାଦେଇ ଆନ୍ଦୋଳନ ପାଇଁ ସକ୍ରିୟ ହୋଇ ପଡ଼ିଲେ । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ଆରମ୍ଭ ହେଲା । ଇଂରେଜ ସରକାର ଭାରତର ନେତାମାନଙ୍କୁ ନ ପଚାରି ଭାରତ ମଧ୍ୟ ଯୁଦ୍ଧରେ ଯୋଗ ଦେଲା ବୋଲି ଘୋଷଣା କରିଦେଲେ । ମହାତ୍ମାଗାନ୍ଧୀ, ଜବାହରଲାଲ ନେହରୁ ପ୍ରଭୃତି ନେତାମାନେ ଇଂରେଜ ସରକାରଙ୍କ ଏହି ଏକତରଫା ଘୋଷଣାରେ ଅତ୍ୟନ୍ତ କ୍ଷୁବ୍ଧ ହେଲେ । ମହାତ୍ମାଗାନ୍ଧୀ ଏଥିପାଇଁ ଗୋଟିଏ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କରିବାକୁ ସ୍ଥିର କଲେ । 'ଯୁଦ୍ଧରେ ଧନ ଜନ ସାହାଯ୍ୟ କରିବା ମହାପାପ' ବୋଲି ଲୋକଙ୍କୁ ବୁଝାଇବା ଏହି ସତ୍ୟାଗ୍ରହର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

୧୯୪୦ ମସିହା ପ୍ରାରମ୍ଭରେ ମହାତ୍ମା ଗାନ୍ଧୀ ଏହି ବ୍ୟକ୍ତିଗତ ସତ୍ୟାଗ୍ରହଟି ଆରମ୍ଭ କଲେ । ଯେଉଁମାନେ ନିୟମିତ ସୂତା କାଟୁଥିବେ, ଖଦଡ଼ ଲୁଗା ପିନ୍ଧୁଥିବେ, ଛୁଆଁ ଅଛୁଆଁ ମାନୁ ନ ଥିବେ, ହିନ୍ଦି ଭାଷା ଓ ନାରୀ ଶିକ୍ଷା ବିଷୟରେ ଲୋକଙ୍କ ମଧ୍ୟରେ ପ୍ରଚଳନ କରୁଥିବେ, ଏବଂ ନିଜେ ସ୍ୱାବଲମ୍ବୀ ହୋଇ ସବୁ କାର୍ଯ୍ୟ କରୁଥିବେ, କେବଳ ସେହିମାନେ ଏହି ସତ୍ୟାଗ୍ରହ କରି ପାରିବେ ।

ଏହି ସବୁ କଥାକୁ ଆଖି ଆଗରେ ରଖି ଜିଲ୍ଲା କଂଗ୍ରେସ୍ କମିଟି ସେଉଁମାନଙ୍କ ନାମ ସୁପାରିସ୍ କରି ମହାତ୍ମାଗାନ୍ଧୀଙ୍କ ପାଖକୁ ପଠାଇବେ, ମହାତ୍ମା ଗାନ୍ଧୀ ତାଙ୍କୁ ସତ୍ୟାଗ୍ରହ କରିବା ପାଇଁ ଅନୁମତି ଦେବେ ।

ସତ୍ୟାଗ୍ରହୀ ଯେଉଁ ସ୍ଥାନରେ ସତ୍ୟାଗ୍ରହ କରିବେ ସେହି ସ୍ଥାନର ନାମ, ତାରିଖ ଓ ସମୟ ଜିଲ୍ଲା କଲେକ୍ଟରଙ୍କୁ ଜଣାଇଦେବେ । ଜିଲ୍ଲା କଲେକ୍ଟର ସମ୍ପୃକ୍ତ ଥାନା ଅଫିସରଙ୍କୁ ଜଣାଇଦେବେ । ସତ୍ୟାଗ୍ରହୀ, ସତ୍ୟାଗ୍ରହ କରିବା ସ୍ଥାନରେ ସମସ୍ତ ଯୁଦ୍ଧ ବିରୁଦ୍ଧରେ କେବଳ କହିବେ । ମହାତ୍ମା ଗାନ୍ଧୀ ଆଚାର୍ଯ୍ୟ ବିନୋବା ଭାବେଙ୍କୁ ଭାରତର ପ୍ରଥମ ସତ୍ୟାଗ୍ରହୀ ଭାବେ ମନୋନୀତ କରିଥିଲେ ।

ସତ୍ୟାଗ୍ରହର ସ୍ଥାନ ଆଗରୁ ଲୋକଙ୍କୁ ଜଣାଇ ଦିଆଯାଉଥିଲା । ମାଗୁଣି ବାବୁଙ୍କ ନାମ ସୁପାରିସ କରି ଜିଲ୍ଲା କଂଗ୍ରେସ କମିଟି ପଠାଇଲେ । ମହାତ୍ମା ଗାନ୍ଧୀ ଗଞ୍ଜାମ ଜିଲ୍ଲା ବୁଗୁଡ଼ା ଥାନା ପଞ୍ଚଭୂଇଁଠାରେ ସତ୍ୟାଗ୍ରହ କରିବା ପାଇଁ ତାଙ୍କୁ ଅନୁମତି ଦେଲେ । ଜାନୁଆରୀ ୧୯୪୧ ମସିହା ୨୫ ତାରିଖରେ ମାଗୁଣି ବାବୁ ସତ୍ୟାଗ୍ରହ କରି ଗିରଫ ହୋଇ ଛଅମାସ ଅଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ । ସେ ଜେଲକୁ ଯିବା ପୂର୍ବରୁ କେତେ ଜଣ କଂଗ୍ରେସ କର୍ମୀ ସତ୍ୟାଗ୍ରହ କରି ଆସି ଜେଲରେ ଥିଲେ । ତା ପରେ ଉମାଚରଣ ପଟ୍ଟନାୟକ ପ୍ରଭୃତି ଆସି ଯୋଗଦେଲେ । ସେମାନଙ୍କୁ ରସଲକୋଣ୍ଡା ଜେଲରେ ଦେଢ଼ମାସ ରଖିବା ପରେ ବ୍ରହ୍ମପୁର କେନ୍ଦ୍ର ଜେଲକୁ ପଠାଇଦେଲେ । ମିଆଦ ପୂରିବା ପର୍ଯ୍ୟନ୍ତ ସେଠାରେ ସମସ୍ତେ ରହିଲେ ।

୧୯୪୨ ମସିହାରେ ମହାତ୍ମାଗାନ୍ଧୀ ଭାରତ ଛାଡ଼ ଆନ୍ଦୋଳନ ନାମରେ ଗୋଟିଏ ଶେଷ ସଂଗ୍ରାମ କରିବା ପାଇଁ ସ୍ଥିର କଲେ । ସେହି ବର୍ଷ ଅଗଷ୍ଟ ୮ ତାରିଖରେ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ୍ କମିଟିର ଅଧିବେଶନ ବସି ଭାରତ ଛାଡ଼ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗ୍ରହଣ କଲେ । ରାତି ପାହିଲା ବେଳକୁ ଭାରତର ସବୁ ଜଣା ଶୁଣା ନେତାମାନଙ୍କୁ ଗିରଫ କରି ସରକାର ଜେଲକୁ ନେଇଗଲେ । ମହାତ୍ମା ଗାନ୍ଧୀ ଜେଲକୁ ଯିବା ପୂର୍ବରୁ ଭାରତବାସୀଙ୍କ ଉଦ୍ଦେଶ୍ୟରେ ଗୋଟିଏ ବାର୍ତ୍ତା ଦେଇଗଲେ । 'କର ବା ମର' ଯେଉଁମାନେ ଜେଲ ବାହାରେ ଅଛନ୍ତି ସେମାନେ ନିଜକୁ ଜଣେ ଜଣେ ନେତା ବୋଲି ଭାବି ଇଂରେଜ ସରକାରଙ୍କୁ ସବୁମତେ ଅଚଳ କରିବା ପାଇଁ କାମ କରି ଯାଆନ୍ତୁ ।'

ଲୋକେ କିଏ କଚେରି ପୋଡ଼ିଲେ, କିଏ ଥାନା ପୋଡ଼ିଲେ, କିଏ ପୋଲ ଭାଙ୍ଗିଲେ, କିଏ ତାର ଲାଇନ୍ କାଟି ପକାଇଲେ, କିଏ ଡହବିଲ ଥାନା ଲୁଟିନେଲେ, କିଏ ଜଙ୍ଗଲ ଆଇନ ଅମାନ୍ୟ କଲେ । ଯିଏ ଯାହା ଉଚିତ ଭାବିଲେ କରି ପକାଇଲେ ।

ଗଞ୍ଜାମର କଂଗ୍ରେସ ନେତା ଘନଶ୍ୟାମ ପଟ୍ଟନାୟକ, ହରିହର ଦାଶ (ନାଳଷଣ୍ଡପୁର) ଗିରଫ ନ ହୋଇ ରହିଯାଇଥିଲେ । ସେ ଦୁହେଁ ହଠାତ୍ ଜଗନ୍ନାଥ ପ୍ରସାଦରେ ପହଞ୍ଚି ସେଠା ବାସିନ୍ଦାମାନଙ୍କୁ ନେଇ ଆନ୍ଦୋଳନ କରିବା ସ୍ଥିର କଲେ । ପଞ୍ଚଭୂତିଠାରେ ଜଙ୍ଗଲ ଆଇନ ଅମାନ୍ୟ କରିବା ପାଇଁ ସ୍ଥିର କରି ପଞ୍ଚଭୂତି ଗଲେ । ସେଠାରେ ଲକ୍ଷ୍ମୁ କେଶକର କାନ୍ଧରେ କୁରାଢ଼ି ପକାଇ ବିରାଟ ଶୋଭାଯାତ୍ରାରେ ଯାଇ ଜଙ୍ଗଲ କାଟିଲେ । ସରକାରଙ୍କ ପକ୍ଷରୁ କିଛି ପ୍ରତିକ୍ରିୟା ପ୍ରକାଶ ନ ପାଇବାରୁ କର୍ମୀମାନେ ମାଲ ଅଞ୍ଚଳକୁ ଯାଇ ସେଠାରେ ଆନ୍ଦୋଳନ କରିବା ସ୍ଥିର କଲେ । ମାଗୁଣି ବାବୁ ଆସ୍କା ଆସି ସେଠା କର୍ମୀମାନଙ୍କୁ ଏକାଠି କରି ଆନ୍ଦୋଳନ ଆରମ୍ଭ କଲେ — ମଦଦୋକାନ ଆଗରେ ପିକେଟିଂ, ଶୋଭାଯାତ୍ରା, ପ୍ରଚାର ପତ୍ର ବଣ୍ଟନ ଇତ୍ୟାଦି କରାଗଲା ।

ଏହିପରି ଭାବରେ କେତେ ଦିନ ଚାଲିବା ପରେ ଆନ୍ଦୋଳନକୁ ନୂଆ ମୋଡ଼ ଦେବା ପାଇଁ ବନ୍ଧୁମାନେ ସ୍ଥିର କଲେ । ଆସ୍କାଠାରୁ ବ୍ରହ୍ମପୁର ରାସ୍ତାରେ ପ୍ରାୟ ତିନି ମାଇଲ ପର୍ଯ୍ୟନ୍ତ ଟେଲିଗ୍ରାମ ତାର କଟା ହେବ, ଆସ୍କା ନିକଟ ରୁଷିକୁଲ୍ୟା ନଦୀର ପୋଲଟି ଡିନାମାଇଟ୍ ସାହାଯ୍ୟରେ ଭାଙ୍ଗି ଦିଆଯିବ, ଟ୍ରେଜେରୀ ଲୁଟ୍ ହେବ । ଏ ତିନୋଟି କାମ ଏକା ଦିନରେ ଏକା ସମୟରେ କରାଯିବା ପାଇଁ ତିନୋଟି ଦଳ କର୍ମୀଙ୍କୁ ବଣ୍ଟାଗଲା । ମାଗୁଣି ବାବୁ ବ୍ରହ୍ମପୁର ଯାଇ କାଶୀନାଥ ପାତ୍ରଙ୍କଠାରୁ ଗୋଟିଏ ଡିନାମାଇଟ ମଧ୍ୟ ରାତିରେ ବଡ଼ ଯତ୍ନରେ ଗୋଟିଏ ଫୁଲକୁଣ୍ଡରେ ରଖି ଟ୍ରେନରେ ଆଣି ଡ଼ା ରାମମୂର୍ତ୍ତିଙ୍କ ଘରେ ରଖିଲେ । କର୍ମୀମାନେ ନୂତନ ଆନ୍ଦୋଳନ ପାଇଁ ସଜବାଜ ହୋଇ ରହିଲେ ।

ଦୁର୍ଭାଗ୍ୟକୁ ପୁଲିସ କୌଣସି ସୂତ୍ରରୁ ଖବର ପାଇ କର୍ମୀମାନଙ୍କ ମଧ୍ୟରୁ ମାଗୁଣି ଦାଶ, ଡ଼ାଃ ରାମମୂର୍ତ୍ତି, ଲଳିତମୋହନ ପାତ୍ର, ଶତ୍ରୁଘ୍ନ ବେହେରା, ରାମଚନ୍ଦ୍ର ବେହେରା, ରଘୁନାଥ ପଣ୍ଡା, ନରସିଂହ ପଣ୍ଡା, କୃଷ୍ଣଚନ୍ଦ୍ର ଶତପଥି ପ୍ରଭୃତି ଆଠ ଜଣ କର୍ମୀଙ୍କୁ ଗିରଫ କରି ରସଲକୋଣ୍ଡା ଜେଲକୁ ପଠାଇଦେଲେ । ନିର୍ଦ୍ଦିଷ୍ଟ ତାରିଖ ଓ ସମୟରେ ଯେଉଁ କର୍ମୀମାନେ ତାର କାଟିବାକୁ ନିଯୁକ୍ତ ହୋଇଥିଲେ

ଟ୍ରେନ ମଙ୍ଗଳ ପୈଁଛନ୍ତି ଟେଲିଗ୍ରାମ ତାର କାଟି ପକାଇଲେ । ଶ୍ୟାମ ସୁନ୍ଦର ପାଣି, ବି କାନାଙ୍ଗୋ, ଜନାର୍ଦ୍ଦନ ସିଂହ ଏ ଟ୍ରେନ ଜଣ ତାରକଟା ପାଇଁ ଗିରଫ ହୋଇ ଜେଲକୁ ଆସି ଆମ ସହିତ ମିଶିଲେ ।

ଜେଲରେ ବିହାର ଓ ମାଡ୍ରାସ ଏପରି ଦୁଇ ପ୍ରକାର ଖାଦ୍ୟ ଦେବା ବ୍ୟବସ୍ଥା ଥିଲା । ମାଡ୍ରାସ ଖାଦ୍ୟ ବା ଡାଏଟରେ ସକାଳୁ ଏକ ଗ୍ଲାସ୍ କାଞ୍ଜି ଖାଇବାକୁ ଦିଆଯାଉଥିଲା । ରାତିକୁ ୨ଟିର ରୁଟି ଭାଜପରି କରି ଦିଆଯାଏ । ଏହାକୁ ଟେଙ୍କି କୁହାଯାଏ । ବିହାର ଡାଏଟ୍‌ରେ ସକାଳୁ ଚୁଡ଼ା ଦେବା ବ୍ୟବସ୍ଥା ରହିଛି । କର୍ମୀଙ୍କ ମଧ୍ୟରେ ଆଲୋଚନା ହୋଇ ବିହାର ଡାଏଟ୍ ଦେବା ପାଇଁ ଦାବି କଲେ । ଜେଲ କର୍ତ୍ତୃପକ୍ଷ ବିହାର ଡାଏଟ ନ ଦେଇ ସେମାନଙ୍କୁ ଏକାଠି ନ ରଖି ଅଲଗା ଅଲଗା କରି ରଖିବା ଉଦ୍ଦେଶ୍ୟରେ ତାଙ୍କ ମଧ୍ୟରେ ଥିବା ମଧୁସୂଦନ ମହାପାତ୍ରଙ୍କୁ ନେଇଯିବା ପାଇଁ ଜେଲର ୱାର୍ଡରମାନଙ୍କୁ ମାତ କରାଇ ଆସି କର୍ମୀମାନେ ଥିବା କୋଠରୀ ଭିତରେ ପଶିଲେ । କର୍ମୀମାନେ ପ୍ରତିରୋଧ କରିବାରୁ ତାଙ୍କ ଉପରେ ଲାଠିମାଡ଼ ହେଲା । କାହାର ମୁଣ୍ଡ ଫାଟିଲା । କାହାର ହାତ ଭାଙ୍ଗିଲା । କାହାର ହାଡ଼ ଭାଙ୍ଗିଲା । ସମସ୍ତେ ଊଣା ଅଧିକେ ଜଖମ ହେଲେ । ମାଗୁଣି ବାବୁଙ୍କର ଡାହାଣ ହାତର ମଝି ଆଙ୍ଗୁଠି ଭାଙ୍ଗି ଯାଇଥିଲା । ସମସ୍ତେ ଚିକିତ୍ସା ଖାନାରେ ପଡ଼ି ଭଲ ହେବା ପରେ କେତେ ଜଣଙ୍କୁ ଜେଲରେ ଛାଡ଼ି, ଅନ୍ୟମାନଙ୍କୁ ଗୋଟିଏ କୋଠରୀରେ ୨୪ ଘଣ୍ଟା ତାଲା ଦେଇ ରଖିଲେ । କେବଳ ଖାଇବା ଓ ଗାଧୋଇବା ପାଇଁ ଅଧଘଣ୍ଟା ବାହାରକୁ ନେଉଥିଲେ ।

ଜେଲର ଖାଇବା ସେମାନଙ୍କୁ ବଡ଼ କଦର୍ଯ୍ୟ ଲାଗୁଥାଏ । ପାଟିଏ ତୋଳା ଭାତ, ଟିକିଏ ତରକାରି ଓ ଅଧକପ୍ ଡାଲି ପେଟ ପୂରୁ ନ ଥାଏ । ସେତକ ଖାଇ ଲୋକେ ଛଟ ପଟ ହେଉଥାନ୍ତି । କୋଠରୀ ଆଗରେ ଜେଲ କର୍ତ୍ତୃପକ୍ଷ ସାଧାରଣ ବନ୍ଦୀମାନଙ୍କ ଦ୍ୱାରା ମୂଳା ଲଗାଇଥାନ୍ତି । କର୍ମୀମାନେ ଖାଇସାରିବା ପରେ ଥାଳି, ଗିନା ଧୋଇବା ପାଇଁ ସେହି ମୂଳା କିଆରିରେ ଗୋଟିଏ ମାଟି ମାଠିଆରେ ପାଣି ରଖାଯାଇଥାଏ । ବାସନ ଧୋଇ ସାରିବା ପରେ ମୂଳା ଗଛକୁ ଉପାଡ଼ି ମାଠିଆରେ ଭରି କୋଠରୀକୁ ନେଇ ୱାର୍ଡରମାନଙ୍କ ଅଜାଣତରେ ମୂଳାଗୁଡ଼ିକ ବାଣ୍ଟି କୁଣ୍ଟି ଖାଆନ୍ତି । ପତ୍ରଗୁଡ଼ିକ ଦେଖିଲେ ଜେଲ କର୍ତ୍ତୃପକ୍ଷ ଦଣ୍ଡ ଦେବେ । ସେଥିପାଇଁ ପତ୍ରଗୁଡ଼ିକ ମଧ୍ୟ ଭାଗ କରି ବାଣ୍ଟି

ଖାଆନ୍ତି । ଏଥିରେ ସାମାନ୍ୟ କ୍ଷୁଧା ମଧ୍ୟ ଶାନ୍ତ ହୋଇଥାଏ । ମୂଳାଗୁଡ଼ିକ ସବୁ ସିଝା ପରେ କୋଠରୀ ଆଗରେ ଥିବା ଜୋଷ୍ଟିନ ଗଛର ପତ୍ରଗୁଡ଼ିକ ଖାଇବା ପାଇଁ **Experiment** କଲେ । ଜେଲ ସମସ୍ତ କଟିବା ପର୍ଯ୍ୟନ୍ତ ସେମାନ ସମସ୍ତଙ୍କୁ ବ୍ରହ୍ମପୁର କେନ୍ଦ୍ର ଜେଲକୁ ନ ପଠାଇ ସେହି ରସଲ୍‌କୋଣ୍ଡା ଜେଲରେ ରଖିଲେ । ଜେଲରୁ ଖଲାସ ହେବା ପରେ ମାଗୁଣି ବାବୁ ଗାଁକୁ ଫେରି ପୁଣି ଗାଁ ଗହଳରେ କଂଗ୍ରେସ ବାର୍ତ୍ତା ପ୍ରଚାର ଓ ଲୋକସେବା କାର୍ଯ୍ୟରେ ଲଗି ପଡ଼ିଲେ । ଜେଲରୁ ଫେରିବା ଦିନ ଠାରୁ ଏ ନିଷ୍ଠାପର ଦେଶ ସେବକ ନିଜର କର୍ତ୍ତବ୍ୟ ସଂପାଦନ ପାଇଁ ସଦା ଜାଗ୍ରତ । ଶ୍ରୀ ଜଗନ୍ନାଥ ମାଗୁଣି ବାବୁଙ୍କୁ ଦୀର୍ଘାୟୁ କରନ୍ତୁ ଏତିକି ମାତ୍ର ପ୍ରଭୁଙ୍କ ନିକଟରେ ତାଙ୍କ ସ୍ୱନକ୍ଷତ୍ରରେ ପ୍ରାର୍ଥନା ।



ବୈଦ୍ୟନାଥ ନିବାସ
ବଡ଼ ଖେମୁଣ୍ଡି ସାହି
ବ୍ରହ୍ମପୁର (ଗଞ୍ଜାମ)-୭୬୦୦୦୧

# ଧୂପବାସ

**ଡକ୍ଟର ଶରତଚନ୍ଦ୍ର ରଥ**

ଗ୍ରାହକମାନଙ୍କର ଚହ୍ଣଶୀଳତା ଯୋଗୁଁ ସାହିତ୍ୟର ମୂଲ୍ୟବୋଧ ବହୁଗୁଣିତ ହୁଏ ଏବଂ ସାହିତ୍ୟିକଙ୍କର ମର୍ଯ୍ୟାଦା ବୃଦ୍ଧି ପାଏ । ମନନଶୀଳତା ତଥା ଆନ୍ତରିକତା ହେତୁ ପ୍ରତ୍ୟେକ ଗ୍ରାହକ ଅସାମାନ୍ୟ ଗୁରୁତ୍ୱର ଅଧିକାରୀ ହୋଇଥାନ୍ତି । ଦର୍ଶକ ନ ଥିଲେ ଦୃଶ୍ୟର ଯେପରି କିଛି ମୂଲ୍ୟ ନାହିଁ, ପାଠକ ବା ଗ୍ରାହକ ନଥିଲେ ସାହିତ୍ୟର ସେପରି କିଛି ମୂଲ୍ୟ ନାହିଁ । ଅତଏବ ଗ୍ରାହକ ହିଁ ଈଶ୍ୱର, ଗ୍ରାହକର ସଶ୍ରଦ୍ଧ ଦୃଷ୍ଟି କାଳେ କାଳେ ସାହିତ୍ୟିକର କାମ୍ୟ । ଏ ପ୍ରସଙ୍ଗରେ କବି ଅଭିମନ୍ୟୁ କହିଛନ୍ତି ।

'ବିବେକୀ ଗ୍ରାହକ କୋଟି କବି ଆୟୁ ଘେନ ।
ବର୍ତ୍ତିଥିଲେ କବି କବିତ୍ୱ କି ହେବ ମ୍ଳାନ ।।

ସହୃଦୟ ପାଠକ, ନିରପେକ୍ଷ ସମାଲୋଚକ, ଅକୁଣ୍ଠ ଚିତ୍ତ ସଂଗ୍ରାହକ, ସଚେତନ ଟୀକାକାର ପ୍ରତ୍ୟେକଙ୍କୁ ଗ୍ରାହକ ଗୋଷ୍ଠୀର ଅନ୍ତର୍ଭୁକ୍ତ କରଯାଇ ପାରେ । ସାହିତ୍ୟ ସାଧନା କ୍ଷେତ୍ରରେ ଏମାନେ ଜଣେ ଜଣେ ସଫଳ ସାଧକ । ଲେଖକ ବା କବିମାନଙ୍କୁ ଚିହ୍ନିତ, ପରିଚିତ ତଥା ପ୍ରତିଷ୍ଠିତ କରିବା ଦିଗରେ ଏମାନଙ୍କର ଭୂମିକା ଅତ୍ୟନ୍ତ ଗୌରବଦୀପ୍ତ ।

ଶ୍ରୀଯୁକ୍ତ ମ'ଗୁଣି ଦାଶ ଏକାଧାରରେ ଜଣେ ଲେଖକ ଓ ଗ୍ରାହକ । ଲେଖକ ସ୍ତରରେ ତାଙ୍କର ଖ୍ୟାତି ରହିଛି । ଗ୍ରାହକ ସ୍ତରରେ ତାଙ୍କର ଖ୍ୟାତି ଅଧିକରୁ ଅଧିକ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅତଏବ ଶ୍ରୀଯୁକ୍ତ ଦାଶ ଯେ ସାରସ୍ୱତ ଦିଗବଳୟର ଜଣେ ଉଜ୍ଜ୍ୱଳ ତାରକା, ଏହା ସ୍ୱୀକାର୍ଯ୍ୟ । ଜୀବନର ବହୁ ସମୟ, ଶକ୍ତି ଓ ସାମର୍ଥ୍ୟକୁ ନିୟୋଜିତ କରି ସେ ବାକ୍‌ଦେବୀଙ୍କର ଆରାଧନା କରିଛନ୍ତି । ଫଳ ସ୍ୱରୂପ ସେ ପାଇଛନ୍ତି ଅମ୍ଳାନ ଆନନ୍ଦ ଓ ଆତ୍ମସନ୍ତୋଷ ଯାହାର କଳନା ନାହିଁ କି ତୁଳନା ନାହିଁ ।

ସାହିତ୍ୟର ସେବା ତାଙ୍କ ପାଇଁ ପରମ ଆହ୍ଲାଦର ବିଷୟ । ସେଥିରେ ସେ କ୍ଲାନ୍ତି କେବେ ବି ଅନୁଭବ କରି ନାହାନ୍ତି । ବିଶେଷତଃ ପ୍ରାଚୀନ ଓ ମଧ୍ୟଯୁଗରେ ସାହିତ୍ୟର ଅନାଲୋଚିତ ଦିଗକୁ ଆଲୋଚନାର ପରିସର ଭୁକ୍ତ କରିବା ଏବଂ କେତେକ ଅପ୍ରକାଶିତ ପୋଥିକୁ ନିଜସ୍ୱ ସାଧ୍ୟ ଉଦ୍ୟମ ବଳରେ ପ୍ରକାଶ କରାଇବା ଭଳି ମହତ କାର୍ଯ୍ୟ ନିରଳସ ଭାବରେ ସେ ସମ୍ପାଦନ କରୁଛନ୍ତି । ଅତୀତରେ କବିମାନେ ତାଳପତ୍ରରେ ନିଜସ୍ୱ ଚିନ୍ତା ଓ ଚେତନାକୁ କାବ୍ୟ କବିତା ରୂପରେ ପ୍ରକାଶ କରୁଥିଲେ । ଆଧୁନିକ ଯୁଗରେ ମୁଦ୍ରଣ ଯନ୍ତ୍ରର ପ୍ରତିଷ୍ଠା ହେତୁ ତାଳ ପତ୍ର ପୋଥିରେ ଥିବା କାବ୍ୟ କବିତାମାନଙ୍କ ମଧ୍ୟରୁ କେତେକ ମୁଦ୍ରିତ ହେଲା । ତେବେ ମୁଦ୍ରଣ ନିମନ୍ତେ ଗୋଟିଏ ବଡ଼ କଥା ହେଉଛି ସଂପାଦନା । ସଂପାଦକଙ୍କ ପ୍ରତି ପଦକ୍ଷେପରେ ଏ କ୍ଷେତ୍ରରେ ନିରପେକ୍ଷ, ସତ୍ୟ ସନ୍ଧାନୀ ତଥା ଗବେଷକ ହେବାକୁ ହେବ । ଅନ୍ୟଥା ବାଂଛିତ ଚେତନାର ବିକାଶ ଘଟିବ ନାହିଁ । ପୁନଶ୍ଚ ସାହିତ୍ୟର ମଧ୍ୟ ସମୃଦ୍ଧି ଘଟିବ ନାହିଁ । ଶ୍ରୀଯୁକ୍ତ ମାଗୁଣି ବାବୁ ଏହି ସଂପାଦନା କ୍ଷେତ୍ରରେ ମଧ୍ୟ ବିଶିଷ୍ଟ ଭୂମିକା ଅର୍ଜନ କରିଛନ୍ତି । ଭଞ୍ଜ ବଂଶର ସାହିତ୍ୟ ସଂପର୍କରେ ସେ ବହୁ ତଥ୍ୟ ପ୍ରଦାନ କରିଛନ୍ତି । 'ଉପେନ୍ଦ୍ର ଭଞ୍ଜ—ଭଜନ ଓ ସଙ୍ଗୀତ' ଶୀର୍ଷକ ତାଙ୍କର ପୁସ୍ତକଟି ଏକ ଶୋଭନ ସଂଗ୍ରହ । ଯହିଁରେ ଉପେନ୍ଦ୍ର ଭଞ୍ଜଙ୍କର ନବେ ଗୋଟି ଭଜନ ଓ ସଙ୍ଗୀତ ମୁଦ୍ରିତ । ଭଞ୍ଜ ସଙ୍ଗୀତର ରମ୍ୟ ଉପସ୍ଥାପନା ନିମନ୍ତେ ତାଙ୍କର ଏହି ଶୁଭଙ୍କର ଉଦ୍ୟମ ସର୍ବାଦୌ ଅଭିନନ୍ଦନୀୟ । ଏ ପୁସ୍ତକର ମୁଖବନ୍ଧରେ ସେ କହନ୍ତି ଅନେକ ସମୟରେ ଉପେନ୍ଦ୍ର ଭଞ୍ଜଙ୍କ ସଂଗୀତଗୁଡ଼ିକ ବିକୃତ ଭାବରେ ଶୁଣିବାକୁ ମିଳେ । ସେଥିପାଇଁ ଭଜନ ଓ ସଙ୍ଗୀତଗୁଡ଼ିକୁ ଏକତ୍ରିତ କରି ଗୋଟିଏ ବହି ପ୍ରକାଶିତ ହେଲେ କଳାକାରମାନଙ୍କର ସୁବିଧା ହେବା ସଙ୍ଗେ ସଙ୍ଗେ ସଙ୍ଗୀତଗୁଡ଼ିକ ବିକୃତ ନ ହୋଇ ପ୍ରକୃତ ରଚନା ପ୍ରକାଶିତ ହୋଇ ପାରିବ । କବି ସମ୍ରାଟଙ୍କର ବିରଚିତ ଅନ୍ୟ ଏକ ପୁସ୍ତକକୁ ସଂଗ୍ରହ କରି ତାହାକୁ 'ରସିକାନୁଚିନ୍ତା ଓ ବିଦେଶାନୁଚିନ୍ତା' ନାମରେ ସେ ପ୍ରକାଶ କରିଛନ୍ତି । ଉପେନ୍ଦ୍ରଙ୍କ ଦ୍ୱାରା ରଚିତ କେତେକ ଚଟାଉକୁ ପ୍ରକାଶ କରିଛନ୍ତି ଶ୍ରୀଯୁକ୍ତ ଦାଶ । ଦୀର୍ଘ ଦିନ ଧରି ଗଞ୍ଜାମର ପୁରପଲ୍ଲୀରେ ଭ୍ରମଣ କରି ଭଞ୍ଜଙ୍କ ରଚିତ ଚଟାଉକୁ କେତେକ ତାଳ ପତ୍ର ପୋଥିରୁ ସଂଗ୍ରହ କରିଛନ୍ତି ବୋଲି ସେ ସ୍ୱୀକାର କରନ୍ତି । ଏହି ଚଟାଉ ସାହିତ୍ୟ ଓ ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସଂପଦ ଯାହା ସଂପର୍କରେ ଅଧିକ ଆଲୋଚନା ହେବା ଉଚିତ ।

'କବି ସମ୍ରାଟ ଉପେନ୍ଦ୍ରଭଞ୍ଜ' ଶୀର୍ଷକ ଅନ୍ୟ ଏକ ପୁସ୍ତକ ରଚନା କରିଛନ୍ତି ଶ୍ରୀଯୁକ୍ତ ଦାଶ । ଏଥିରେ ଉପେନ୍ଦ୍ର ଭଞ୍ଜଙ୍କର ବଂଶ ପରିଚୟ, ଜନ୍ମ, ଶିକ୍ଷା, ଦାମ୍ପତ୍ୟ ଜୀବନ, କାବ୍ୟ କବିତା ରଚନା, ତାରକ ମନ୍ତ୍ର ସିଦ୍ଧି, କବିଙ୍କର ଶେଷ ଜୀବନ ଓ ମହାପ୍ରୟାଣ ସଂପର୍କରେ କେତେକ ତଥ୍ୟ ଉପସ୍ଥାପିତ । ଏହି ଆଲୋଚନା ପୁସ୍ତକଟି ସୁଖପାଠ୍ୟ ହୋଇଛି । ଏହାର ମୁଖବନ୍ଧରେ ଲେଖକ କହନ୍ତି —

"ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଜାତିର ଗର୍ବ ଓ ଗୌରବ । ତାଙ୍କର ଉତ୍କୃଷ୍ଟ ଜୀବନୀଟିଏ ଲେଖି ଓଡ଼ିଶାର ପାଠକମାନଙ୍କ ହାତରେ ଦେବା ପାଇଁ ମୁଁ ଉଦ୍ୟମ କରିଛି" । 'କୁମୁଦନୀରେ ଭଞ୍ଜ' ତାଙ୍କର ଅନ୍ୟ ଏକ ପୁସ୍ତକ ଯହିଁରେ ଭଞ୍ଜ ଭୂମି ଘୁମୁସର ରାଜାଙ୍କୁ ଭିତ୍ତି କରି ଗଠିତ କାହାଣୀ ଓ କୁମୁଦନୀ ସ୍ଥାନିତ । ଭଞ୍ଜଙ୍କର ଯୋଲଗୋଲକୁ ପ୍ରକାଶ କରିଛନ୍ତି ଶ୍ରୀଯୁକ୍ତ ଦାଶ । ଓଡ଼ିଆ ସାହିତ୍ୟର ଗନ୍ଧାଘରକୁ ତାଙ୍କର ଏହା ଏକ ଅନବଦ୍ୟ ଅବଦାନ ।

ପୂର୍ବରୁ ଶ୍ରୀଯୁକ୍ତ ଦାଶ ଶିଳ୍ପ ଓ ସମସ୍ତ ଦେଇ ରାଜକବି ଧନଞ୍ଜୟ ଭଞ୍ଜଙ୍କ ଦ୍ୱାରା ରଚିତ 'ଶ୍ରୀକୃଷ୍ଣକ୍ରୀଡ଼ା' କାବ୍ୟର ସଂପାଦନା ଓ ପ୍ରକାଶ କରିଛନ୍ତି । କବି ଶକ୍ତିଚରଣ ଦାଶଙ୍କର ଏକ କବିତାକୁ ପ୍ରକାଶ କରି ସେ ତାଙ୍କର ନାମ ରକ୍ଷିଛନ୍ତି ପୁନାର୍ଥ ଜଣାଣ । ଓଡ଼ିଆ ସାହିତ୍ୟର ଭଣ୍ଡାରକୁ ସମୃଦ୍ଧ କରିବା ପାଇଁ ତାଙ୍କ ଦ୍ୱାରା ସଂପାଦିତ ଓ ପ୍ରକାଶିତ ପ୍ରତ୍ୟେକ ପୁସ୍ତକ ଏକ ଏକ ଅମୂଲ୍ୟ ରତ୍ନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସ୍ନେହାସ୍ପଦ ଶ୍ରୀଯୁକ୍ତ ମାଗୁଣି ଦାଶ ଜଣେ ନୀରବ ଓ ନିଷ୍ଠାପର ସାହିତ୍ୟ ସାଧକ । ଅକ୍ଳାନ୍ତ ପରିଶ୍ରମ ପ୍ରବଳ ଆଗ୍ରହ, ଗଭୀର ଆନ୍ତରିକତା ବଳରେ ସେ ଏହିପରି ଶାସ୍ତ୍ରଗ୍ରନ୍ଥ ସଂପାଦନା ଓ ପ୍ରକାଶ ଦିଗରେ ସଫଳ ସାଧୁ ଉଦ୍ୟମ କରିଛନ୍ତି । ସାହିତ୍ୟର ବାଣୀ ଉପାସନା ପାଇଁ ତାଙ୍କର ଏହି ଉଦ୍ୟମ ହୋଇଛି ଫୁଟ ଫୁଲ । ଏହାର ମୂଲ୍ୟ ଓ ମହତ୍ତ୍ୱ ଅନୁଭବ୍ୟ । ଆଜି ଏହି ଅବସରରେ ମୁଁ ଆଶାପୋଷଣ କରୁଛି ସେ ଲେଖନୀ ତାଙ୍କର ଅଧିକରୁ ଅଧିକ ଚଳଚଞ୍ଚଳ ହେଉ । ପରିଶେଷରେ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନାରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।



ଅଧ୍ୟାପକ

ଓଡ଼ିଆ ବିଭାଗ, ବାଣୀ ବିହାର

# ମୋ ନନାଙ୍କୁ ମୁଁ ଯେପରି ଜାଣେ

ଅଧ୍ୟାପକ ଶୁଭ୍ରାଂଶୁ ରଞ୍ଜନ ଦାଶ

"ତୁମ ନନାଙ୍କ ଉପରେ ଗୋଟିଏ monumental project ମୁଁ ହାତକୁ ନେଉଛି । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଭିନ୍ନ ଭିନ୍ନ କ୍ଷେତ୍ରର ପ୍ରତିଷ୍ଠିତ ବ୍ୟକ୍ତି ବିଶେଷଙ୍କଠାରୁ ନନାଙ୍କ ଉପରେ ଲେଖା ପାଇଁ ମୁଁ ପତ୍ର ଦ୍ୱାରା ଅନୁରୋଧ କରାଇଛି । କିଛି ଲେଖା ହସ୍ତଗତ ହୋଇଛି ଏବଂ ଅନ୍ୟ ଲେଖାଗୁଡ଼ିକ ନିକଟ ଭବିଷ୍ୟତରେ ହସ୍ତଗତ ହେବାର ଆଶା ପୋଷଣ କରୁଛି । ପରିବାର ତରଫରୁ ନନାଙ୍କ ସମ୍ପର୍କରେ ଏକ କ୍ଷୁଦ୍ର ପ୍ରବନ୍ଧ "ମୋ ନନାଙ୍କୁ ମୁଁ ଯେପରି ଜାଣେ" ଉପରେ ଲେଖିବେ । ସେଥିରେ ତାଙ୍କ personality ଉପରେ ତର୍କନାତ୍ମକ ଆକଳନ ( Critical Assessment ) ରହିବା ଦରକାର"

ଏହା ଥିଲା ଅଧ୍ୟାପକ ଡକ୍ଟର ବିବେକାନନ୍ଦ ପାଣିଗ୍ରାହୀଙ୍କର ମୋ ପାଇଁ ଉଦ୍ଦିଷ୍ଟ ବକ୍ତବ୍ୟ । କିଏ କହେ ଏ ଯୁଗରେ ପ୍ରତିଭାର ସମ୍ମାନ ନାହିଁ ? କିଏ କହେ ଏ ଯୁଗ କେବଳ ନକଲି ବ୍ୟକ୍ତିବାଦର ଯୁଗ ?

ଉପରୋକ୍ତ ପତ୍ରରୁ ମୋ'ତେ ଯେତିକି ଆନନ୍ଦ ଓ ପ୍ରୋତ୍ସାହନ ମିଳିଲା ତତୋଽଧିକ ମୋ ସ୍ମୃତିକୋଷରେ ବହୁ ସ୍ମୃତିଚିତ୍ର ଘଟଣାମାନଙ୍କ ବିଷୟ ରୋମାଞ୍ଚିତ ଅନୁଭବ କରିପାରିଲି । ସେମିତି ଆକାଶର ସୀମା ନାହିଁ, ଶୂନ୍ୟତାର କୌଣସି ନିର୍ଦ୍ଦିଷ୍ଟ ଅବବୋଧ ନାହିଁ । ସେମିତି ସନ୍ତାନ ପକ୍ଷରେ ତା ପିତା ଅର୍ଜିତ ସମ୍ମାନର କୌଣସି ପ୍ରକୃତ ମୂଲ୍ୟ ମାପ ନାହିଁ ! ତାହା ଏକ ଅପରିଶୋଧ୍ୟ ଆଶୀର୍ବାଦ ସେଥିପାଇଁ ଭାରତୀୟ ଆର୍ଯ୍ୟଋଷି ବୈଦିକ ଯୁଗରୁ ଘୋଷଣା କରିଛନ୍ତି "ପିତା ସ୍ୱର୍ଗ, ପିତା ଧର୍ମ, ପିତା ହିଁ ପରମ ତପ" ।

ଅନୁରୋଧର ଦାୟରେ/ସମ୍ମାନନୀୟ ପାଣିଗ୍ରାହୀଙ୍କ ନିର୍ଦ୍ଦେଶରେ ସେ ଅପାରୋକ୍ଷ ଅଥଚ ଅସ୍ପଷ୍ଟ ଅବବୋଧରୁ ମୁଁ କିଛି କହିବାକୁ ଚାହେଁ । ଯାହା ତାହା ପାଇଁ କିଛି ହେଉ ବା ନ ହେଉ । ମୋ ଜୀବନ ପାଇଁ ଏକ ମାତ୍ର ସାହା ହୋଇ ଆସିଛି ।

ପିଲାଦିନେ ମୋର ବାଲ୍ୟ ଜୀବନ ପ୍ରାୟତଃ ନନାଙ୍କ ଫୁଲବାଣୀ, କୋରାପୁଟ ଏବଂ କଳାହାଣ୍ଡି ଜଙ୍ଗଲ ସମସ୍ତ ମଧ୍ୟରେ କଟିଯାଇଛି । ଲୋକ ସମ୍ପର୍କ ବିଭାଗର ଅଧିକାରୀ ରୂପେ ନନା ବିଭିନ୍ନ ମାଳ ଅଞ୍ଚଳକୁ ଟୁରରେ ଯାଆନ୍ତି । ଫେରିଲା ବେଳେ ଆମମାନଙ୍କ ପାଇଁ ମାଳ ଅଞ୍ଚଳର ଜିନିଷ ଯଥା – ଅମ୍ବ, ପଣସ, ମିଠାଆଳୁ ଆଦି ନେଇକରି ଆସନ୍ତି । ବାଲ୍ୟ ଜୀବନର ସେହି ଆଦ୍ୟକାଳରେ ଜଣେ ସ୍ନେହ ପ୍ରବଣ ବ୍ୟକ୍ତି ଭାବେ ପ୍ରଥମେ ନନାଙ୍କୁ ପାଇଥିଲି । ଦିନ ସାରର କ୍ଲାନ୍ତ ପରିଶ୍ରମ ପରେ ମଧ୍ୟ ଶୋଇବାକୁ ଗଲାବେଳେ ମୋତେ ପାଖରେ ଶୁଆଇ ପଣକିଆ ଡାକିବାର ନିତିଦିନିଆ କାର୍ଯ୍ୟଟିକୁ ସେ ଭୁଲିନଥାନ୍ତି । ବେଳେବେଳେ ସେହି କାର୍ଯ୍ୟରୁ ଟିକିଏ ଓହରିବାକୁ ଯାଇ ମୁଁ ନନାଙ୍କୁ ଅନେକ ଅଦ୍ଭୁତ ପ୍ରଶ୍ନମାନ ପଚାରେ. ଯଥା—"ରେଡ଼ିଓ ଭିତରେ କେତେ କେତେ ଲୋକ ସବୁ ଅଛନ୍ତି ନା ?" "ସମୁଦ୍ର ଭିତରେ କେତେ ତାଳ କୁଅ ଥାଏ ?" ଇତ୍ୟାଦି । କିନ୍ତୁ ମୋର ଚପଳ ମନର ଏହି ଜିଜ୍ଞାସା ଗୁଡ଼ିକୁ ନନା ହତୋତ୍ସାହିତ କରିବାକୁ ଚାହାନ୍ତି ନାହିଁ । ଅତ୍ୟନ୍ତ ଧୈର୍ଯ୍ୟ ଓ ସ୍ନେହଶୀଳତାର ସହ ଏ ସମସ୍ତ ପ୍ରଶ୍ନ ଗୁଡ଼ିକର ଏକ ବିଧିବଦ୍ଧ ଉତ୍ତର ଦେବାକୁ ସେ ଚେଷ୍ଟା କରନ୍ତି । ଯାହାକି ମୋର ବାଳୁତ ମନକୁ ଟିକିଏ ଆନନ୍ଦ ଦେଉ ।

ମୁଁ ସ୍କୁଲରେ ଥିଲାବେଳେ ସାଙ୍ଗମାନଙ୍କ ସହ ମିଶି ନାଟକ କରିବାକୁ ଭାରି ଭଲ ପାଉଥିଲି । ସେହି ନାଟକ ଗୁଡ଼ିକର କିଛି ବିଷୟବସ୍ତୁ ନ ଥିଲା ବା ଲେଖକ ଏବଂ ନିର୍ଦ୍ଦେଶକ ନ ଥିଲେ । ଯାହାକୁ ଯାହା ଆସେ ନାଚି ଅଭିନୟ କରନ୍ତି । ମୁଁ ଏଠି ଦର୍ଶକ ମଧ୍ୟ କେହି ନଥାନ୍ତି । କିନ୍ତୁ ନାଟକର ଗୋଟିଏ ନାଁ ନିଶ୍ଚିତ ରୂପେ ଦିଆଯାଏ । ବେଳେବେଳେ ଆମକୁ ନାଁ ଖୋଜିବାକୁ କଷ୍ଟ ହୁଏ । ଥରେ ନନାଙ୍କର ଗୋଟିଏ କବିତା ବହି ପ୍ରକାଶିତ ହୋଇ ଘରକୁ ଆସିଥାଏ । "କଏଦୀର ଭାବନା" । ନନାଙ୍କର ସ୍ୱାଧୀନତା ସଂଗ୍ରାମ ଜୀବନର ଜେଲ ଭିତରେ ରଚିତ ଏହାଙ୍କର କବିତା ପୁସ୍ତକ । ମୁଁ ଏହି ନାଁଟିକୁ ସାଙ୍ଗମାନଙ୍କୁ ଯାଇ କହିଥିଲି ଆମ ନାଟକର ନାମକରଣ ପାଇଁ । ମୋ ପାଇଁ ଏହା ଥିଲା ନନାଙ୍କ କବିତା ଉପରେ ପ୍ରଥମ ପରିଚୟ । ଜଣେ ସ୍ନେହ ପ୍ରବଣ ସାମାଜିକ ବ୍ୟକ୍ତିଙ୍କ ଆଉ ଏକ ଦିଗକୁ ମୁଁ ସେ ଦିନ ଆବିଷ୍କାର କରିପାରିଥିଲି ।

ଭବାନୀ ପାଟଣା ଅବସ୍ଥାନ କାଳରେ ନନା ଏକ ମାନସିକ ଅଭାବ ବୋଧ ଭିତରେ ହୁଏତ କିଛି ହାସ୍ୟ ପାଇଁ ଗଳ୍ପ କହୁଥିବା ବେଳେ ଜୀବନକୁ

ଚଳଚଞ୍ଚଳ ଓ ଗଠନ ମୂଳକ ପ୍ରକ୍ରିୟାରେ ସାମିଲ କରିବା ପାଇଁ ଅଫିସର୍ କ୍ଲବର ସଭ୍ୟମାନଙ୍କୁ ନାଟକ କରିବାକୁ ପ୍ରୋତ୍ସାହିତ କରିବାରେ ସଫଳକାମ ହୋଇଥିଲେ । ଯାହା ଫଳରେ ସେଠି ଏକ ସାଂସ୍କୃତିକ ଜୀବନର ପୁନର୍ବିନ୍ୟାସ ଘଟିଥିଲା ଓ ଅଭିନୀତ ହୋଇଥିଲା ନାଟକ 'ବକସ୍ ନଗରକୁ' ସୁଦୂର କଟକରୁ ସମ୍ମୁଏଲ ସାହୁଙ୍କୁ ନିଆଯାଇଥିଲା ନାଟକର ନିର୍ଦ୍ଦେଶକ ଭାବରେ । ଏହି ନାଟକର ମଞ୍ଚଗତ ସଫଳତା ପରବର୍ତ୍ତୀ କାଳରେ ଭବାନୀପାଟଣାବାସୀଙ୍କ ପାଇଁ ନାଟ୍ୟ ପିପାସାର ଦ୍ୱାର ଉନ୍ମୋଚନ କରିଥିଲା । ଭବାନୀପାଟଣାର ନାଟ୍ୟକାର ପ୍ରଫୁଲ୍ଲ କୁମାର ରଥଙ୍କ ଦ୍ୱାରା ରଚିତ ଏବଂ ନିର୍ଦ୍ଦେଶିତ ଅନେକ ନାଟକ ଯଥା— 'ଶବ ପଡ଼ିଛି' 'ମୁଁ ବାପା ହେବି' 'ଗୃହଛିଦ୍ର' ଆଦି ମୁଁ ନନାଙ୍କ ସହ ଦେଖିବାର ସୁଯୋଗ ପାଇଥିଲି ।

ଭବାନୀପାଟଣା ଟେଲିଗ୍ରାଫ କଲୋନୀଠାରେ ଆମେ ଥିଲାବେଳେ ଏକ ମୀନା ମଣ୍ଡଳୀ ଗଢ଼ିଥିଲୁ । ଏହାର ନାମ ଥିଲା 'ଶହୀଦ ମୀନା ମଣ୍ଡଳୀ' । ନନା ସେଥିର ଉପଦେଷ୍ଟା ଥିଲେ । ଏ ଭଳି ନାମକରଣ ସହ ଦେଶପ୍ରେମର ନିବିଡ଼ ସମ୍ପର୍କ ଥିବାରୁ ନନା ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ମୀନା ମଣ୍ଡଳୀର ଏକ ପ୍ରାରମ୍ଭିକ ଉତ୍ସବରେ ଓଡ଼ିଶାର ପ୍ରଖ୍ୟାତ ରାଜନେତାଙ୍କ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ମୁଖ୍ୟ ଅତିଥି ରୂପେ ଆମନ୍ତ୍ରଣ କରି ଆଣିଥିଲେ । ଡକ୍ଟର ମହତାବଙ୍କ ସହିତ ନନାଙ୍କ ଆତ୍ମୀୟତା ବୋଧହୁଏ ସ୍ୱାଧୀନତା ସଂଗ୍ରାମ କାଳରୁ ଗଢ଼ି ଉଠିଥିଲା । ମୋର ମନେ ପଡ଼ୁଛି ଆମେ ସେଠାରେ ଥିବା ପର୍ଯ୍ୟନ୍ତ ଶହୀଦ ମୀନାମଣ୍ଡଳୀ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରୁଥିଲା । ବିଶେଷ କରି ସେଠାରେ ନାଟ୍ୟାମୋଦୀ ଦର୍ଶକମାନଙ୍କ ପାଇଁ ଆମେ ବହୁ ନାଟକ ମଞ୍ଚସ୍ଥ କରିଥିଲୁ । ଏପରି କୋଣସି ନାଟକ ମଞ୍ଚସ୍ଥ ହୋଇ ନ ଥିଲା, ଯେଉଁଥିରେ ମୋର କିଛି ଭୂମିକା ନ ଥିଲା । ସମ୍ଭବତଃ ପିଲାବେଳର ସେହି ଅଭିଜ୍ଞତା ଦ୍ୱାରା ପରବର୍ତ୍ତୀ ସମୟରେ ମୁଁ ଜଣେ ସ୍ୱୀକୃତିପ୍ରାପ୍ତ ବେତାର କଳାକାର ରୂପେ ନିଜକୁ ଗଢ଼ି ପାରିଛି । ଏହି କ୍ଷେତ୍ରରେ ନନାଙ୍କ ଉତ୍ସାହ କିଛି କମ୍ ନ ଥିଲା ।

ଅନେକ ସମୟରେ ନନା ବିଭିନ୍ନ ସାଂସ୍କୃତିକ ଉତ୍ସବ କରିବା ଅବସରକୁ ଧଳାଧୋତି ଏବଂ ପଞ୍ଜାବୀ ପିନ୍ଧି ଯାଆନ୍ତି । ଘରରେ ଫେରିଲାବେଳେ ଫୁଲମାଳ କିମ୍ବା ଫୁଲତୋଡ଼ା ଧରି ଘରକୁ ଆସନ୍ତି । ସେତେବେଳେ ଆମ ପଡ଼ିଶା ଲୋକମାନେ ପିଲାଠାରୁ ବଡ଼ ଯାଏ ତାଙ୍କୁ ଏକ ବିଶିଷ୍ଟ ସମ୍ମାନ ସୂଚକ

ଗୁହାଣୀରେ ଗୁନ୍ଦାନ୍ତୁ, ସେଉଁଥିରୁ ମୁଁ ଅନୁଭବ କରେ ମୋ ନନା ବଡ଼ । ବଡ଼—ଅହଂକାର କିମ୍ବା ଆଭିଜାତ୍ୟରେ ନୁହେଁ, ତାଙ୍କର ସମସ୍ତ ହୃଦୟବତ୍ତା, ମାନବିକତାବୋଧ ଓ କଲ୍ପନା ପ୍ରବଣତା ତାଙ୍କୁ ଏହି ବଡ଼ ହେବାର ଆସନରେ ଅଧିଷ୍ଠିତ କରାଇ ଦେଇଥିଲା । ଏହି ହେତୁ ମୋ ଦୃଷ୍ଟିରେ ଥିବା ସାଧାରଣ ମନୁଷ୍ୟମାନଙ୍କ ପାଖରୁ ନନାଙ୍କୁ ଜଣେ ଭିନ୍ନ ଧରଣର ଅସାଧାରଣ ମଣିଷ ରୂପେ ଖୋଜି ପାଉଥିଲି ।

ସ୍କୁଲବେଳେ ନନାଙ୍କ ସହ ମାଳ ଅଞ୍ଚଳର ବିଭିନ୍ନ ପ୍ରାକୃତିକ ସୀମା ଓ ଜଙ୍ଗଲ ଦେଖିବାର ସୁଯୋଗ ପାଇଥିଲି । ନନା ଆଗରୁ ମହଲାରେ ଯେ ଦେବୀଙ୍କୁ ଯାଆନ୍ତି ସେଠି ବିଭିନ୍ନ ତଥ୍ୟ ସଂଗ୍ରହ କରି ଲେଖାମାନ ପତ୍ର ପତ୍ରିକାରେ ପ୍ରକାଶ କରନ୍ତି । ଏଥିରେ ନନାଙ୍କର ଏକ ବିଶେଷ ଆଗ୍ରହ ମୁଁ ଲକ୍ଷ୍ୟ କରିଥାଏ । ଓଡ଼ିଶାର ପ୍ରତିପଲ୍ଲୀରେ ପରିପାଳିତ ହେଉଥିବା ସାଂସ୍କୃତିକ ପ୍ରକାଶନ, ମେଳା ମହୋତ୍ସବର ଆଚରଣୀୟ ଧର୍ମାନୁଗତ ସଂସ୍କୃତି ସାଂସ୍କୃତିକ ଜୀବନ ଯୋଗୁଁ ପରିଶିଷ୍ଟ ବିଶେଷର ଅସ୍ତିତ୍ୱ ନେଇ ଆଉ ଅନ୍ୟ ପଦ ନଥିଲା ପାରେ—ଏହି ଜନ୍ମ ଲୋକଲୋଚନକୁ ଆଣିବାରେ ନନାଙ୍କର ଏକ ବିଶେଷ ଅବଦାନ ରହିଛି । ଏହା ଛଡ଼ା ମାଳ ଅଂଚଳର ଜନସାଧାରଣଙ୍କ ଜୀବନ ପ୍ରଣାଳୀକୁ ଅନୁଧ୍ୟାନ କରିବାରେ ନନା ଏକ ବିଶେଷ ଆନନ୍ଦ ପାଉଥିଲେ । ସେଗୁଡ଼ିକ ମଧ୍ୟ ବିଭିନ୍ନ ପତ୍ରପତ୍ରିକାରେ ସେ ପ୍ରକାଶ କରନ୍ତି । ପରବର୍ତ୍ତୀ ସମୟରେ ଫୁଲବାଣୀରେ ଥିଲାବେଳେ "ଫୁଲବାଣୀରେ କନ୍ଧ ସଂସ୍କୃତି" ନାମରେ ଏକ ଗବେଷଣାତ୍ମକ ପୁସ୍ତକ ସେ ପ୍ରକାଶ କରିଥିଲେ । ମୋର ମନେ ଅଛି, ଏହା ପରବର୍ତ୍ତୀରେ ସେ ବିଭିନ୍ନ ସ୍ଥାନକୁ ମଧ୍ୟ ଭ୍ରମଣ କରିବାକୁ ଯାଆନ୍ତି । ସେତେବେଳେ କନ୍ଧମାନଙ୍କର ଭାଷା ଶିଖିବା ପାଇଁ ମଧ୍ୟ ସେ ଉଦ୍ୟମ କରିଥିଲେ ଏବଂ କେତେ ପରିମାଣରେ ସଫଳ ହୋଇ ପାରିଥିଲେ ।

ସ୍କୁଲବେଳୁ ବିଭିନ୍ନ ପ୍ରତିଯୋଗିତା ଯଥା ପ୍ରବନ୍ଧ, ଚିତ୍ରକଳା ଇତ୍ୟାଦିରେ ଭାଗ ନେବାକୁ ନନା ଆମ ଭାଇ ଭଉଣୀମାନଙ୍କୁ ସବୁବେଳେ ଉତ୍ସାହିତ କରନ୍ତି । ଏ କ୍ଷେତ୍ରରେ ବିଭିନ୍ନ ସଭା, ସମିତିରେ ନନାଙ୍କ ଭାଷଣ ଶୁଣିବାର ସୁଯୋଗ ପାଇଥାଉ । ତେଣୁ ତାର ପ୍ରଭାବ ଆମମାନଙ୍କ ଉପରେ ଯଥେଷ୍ଟ ପଡ଼ିଛି । ଫଳରେ ଆମେ ୫ ଭାଇ ଭଉଣୀ ଆଜି ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇ ନନାଙ୍କ ବହୁମୁଖୀ ବ୍ୟକ୍ତିତ୍ୱକୁ ସ୍ପଷ୍ଟ ଉପଲବ୍ଧି କରିପାରୁଛୁ । ତେବେ ଏଇଠି ମୁଁ ଆମ ବଂଶ ସୂଚନା ଦେବାକୁ ଉଚିତ ମନେ କରୁଛି ।

# ଆମ ବଂଶ ବୃକ୍ଷ

ଅନନ୍ତ ଦାଶ

ମାଗୁଣି ଦାଶ | ବୈଦ୍ୟନାଥ ଦାଶ | ଜନାର୍ଦ୍ଦନ ଦାଶ

(ମାଗୁଣି ଦାଶ):

| | | | | |
|---|---|---|---|---|
| ସନ୍ତୋଷ (ଟେଲିଫୋନ ଅଧିକାରୀ) | ସତୀଶ (ମତ୍ସ୍ୟ ସଂପ୍ରସାରଣ ଅଧିକାରୀ) | ସୁଧାଂଶୁ (ସହକାରୀ ଶାଖା ପରିଚାଳକ ଜୀବନବୀମା ନିଗମ) | ସସ୍ମିତା (ଅଧ୍ୟାପିକା) | ଶୁଭ୍ରାଂଶୁ (ଅଧ୍ୟାପକ ଇତିହାସ ବିଭାଗ) |

ପ୍ରାତ୍ୟହିକ ଜୀବନରେ ଶୃଙ୍ଖଳାଜ୍ଞାନ ହିଁ ନନାଙ୍କଠାରୁ ଆମେ ପାଇ-ଅଛୁ । ବ୍ରାହ୍ମଣ ପରିବାରର କାଇଦାକାନୁନ ଆମକୁ କର୍ମମୁଖର କରିଛି । ନନାଙ୍କ ଦୈନନ୍ଦିନ ଜୀବନରେ ପ୍ରତ୍ୟୁଷରୁ ରାତ୍ରି ଯାଏଁ ଘରର ବିଭିନ୍ନ ଆବଶ୍ୟକତା ଓ କାର୍ଯ୍ୟାବଳୀ ଛିଦ୍ର ହୋଇ ରହିଥାଏ । କିନ୍ତୁ ତା' ଭିତରେ କୋଉଠି ଥାଏ ଫୁରୁସତ କେଜାଣି— ପ୍ରତିଦିନ ସକାଳୁ କିଛି ନେଇଥାଏ ଲେଖାଟିଏ । ସାଧନା ଓ ସିଦ୍ଧିର ଇତିହାସରେ ଏହା ଏକ ପରଂପରାହୀନ ଅବବୋଧ । ଅନ୍ୟମାନଙ୍କ କଥା ମୁଁ କହି ନ ପାରେ, ତେବେବେଳେ ବେଳେ ମୋ ଭିତରେ ସେ ସୃଜନଶୀଳ ସମ୍ମୋହନ ମୋତେ ନନାଙ୍କ ପରି ହେବା ପାଇଁ ପ୍ରୋତ୍ସାହିତ କରେ, କିନ୍ତୁ ଆବଶ୍ୟକୀୟ ଧୈର୍ଯ୍ୟ ଓ ସାଧନା ନ ଥିବାରୁ ମୁଁ ଏଥିରେ ସଫଳ ହୋଇପାରେ ନାହିଁ ।

ସ୍ୱାଧୀନତାର ପାଖ ୧୪ ବର୍ଷ ପରେ ମୁଁ ଜନ୍ମ ହୋଇଛି ଓ ଆଜି ଦେଶ ସ୍ୱଚ୍ଛନ୍ଦ ଜୀବନ ପ୍ରବାହ ଭିତରେ ଗତି କରୁଛି ତାହା ମୋ ନନାଙ୍କ ସଂଗ୍ରାମର ଫଳ ବୋଲି ମୁଁ ଗର୍ବ ଅନୁଭବ କରେ । ଶୁଣିଛି, ଯେତେବେଳେ ମୋ ନନା ସ୍କୁଲର ଛାତ୍ର ଥିଲେ—ମହାତ୍ମାଗାନ୍ଧୀଙ୍କ ଡାକରାରେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ ଓ କାରାବରଣ କରିଥିଲେ । ଉତ୍କଳର ହରେକୃଷ୍ଣ ମହତାବ ତାଙ୍କର କାରାଗାରର ବନ୍ଧୁ ଥିଲେ । ଜେଲ ଜୀବନର ସ୍ମୃତି ତାଙ୍କର ବିଭିନ୍ନ ରଚନାରେ ପ୍ରତିଫଳିତ । ବ୍ରହ୍ମପୁର ଓ ରସଲକୋଣ୍ଡା ଜେଲରେ ତାଙ୍କର ଦେଶପ୍ରେମୀ ଚେତନାକୁ ବନ୍ଦୀ କରାଯାଇଥିଲେ ହେଁ ବାସ୍ତବରେ ସେତେବେଳେ ସେ ଥିଲେ ଏକ ଅନିର୍ବାଣ ଦୀପଶିଖା ।

ସଂଗ୍ରାମୀ ଜୀବନର ଅବସାନ ପରେ ନନା କିଛି ବର୍ଷ ଆୟୁର୍ବେଦ ଶାସ୍ତ୍ର ପ୍ରତି ଆକୃଷ୍ଟ ହୋଇ ଭଞ୍ଜନଗରଠାରେ ଏକ ଚିକିତ୍ସାଳୟ ସ୍ଥାପନ କରିଥିଲେ । ଏହି ହେତୁ ସେତେବେଳେ ସେ 'କବିରାଜ' ନାମରେ ପରିଚିତ ଥିଲେ । ଆଜି ପର୍ଯ୍ୟନ୍ତ ମଧ୍ୟ କିଛି ପୁରୁଣାକାଳିଆ ଲୋକ ତାଙ୍କୁ ଏହି 'କବିରାଜ' ନାମରେ ଜାଣନ୍ତି ।

୧୯୪୫ ମସିହାରେ ଭଞ୍ଜନଗରଠାରେ ପ୍ରତିଷ୍ଠିତ 'ଭଞ୍ଜସାହିତ୍ୟ ପରିଷଦ'ର ସେ ପ୍ରଥମ ସଂଗଠନ ସମ୍ପାଦକ ଥିଲେ । ଅନୁଷ୍ଠାନର ଅନେକ ପ୍ରସ୍ତାବ ମଧ୍ୟରେ ରସଲକୋଣ୍ଡାର ନାମ ପରିବର୍ତ୍ତନ ଏକ ମୁଖ୍ୟ ପ୍ରସଙ୍ଗ ଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଯେତେବେଳେ ସରକାରୀ କାର୍ଯ୍ୟରେ ରସଲକୋଣ୍ଡା ଯାଉଥିଲେ, ଏହି ପ୍ରସ୍ତାବଟିକୁ ଲିଖିତ ଆକାରରେ 'ଭଞ୍ଜ ସାହିତ୍ୟ ପରିଷଦ' ତରଫରୁ ତାଙ୍କୁ ପ୍ରଦାନ କରାଯାଇଥିଲା । ଡକ୍ଟର ମହତାବଙ୍କ କହିବା ଅନୁଯାୟୀ ଜଣେ ପ୍ରତିନିଧିଙ୍କୁ ଏ ବିଷୟରେ ଆଲୋଚନା କରିବା ପାଇଁ କଟକଠାରେ ଥିବା ସେକ୍ରେଟେରିଏଟ୍‌କୁ ପ୍ରେରଣ କରାଯାଇଥିଲା । ସିଏ ଆଉ କେହି ନ ଥିଲେ, ଥିଲେ ମୋ ନନା । ଏହି ପ୍ରଥମ ଆଲୋଚନା ପରେ ଜନମତ ସଂଗୃହୀତ ହୋଇ ପରବର୍ତ୍ତୀ ପର୍ଯ୍ୟାୟରେ ସରକାରୀ ଅନୁମୋଦନ ଲାଭ କରାଯାଇଥିଲା ଏବଂ ୧୯୫୩ ମସିହାରେ ରସଲକୋଣ୍ଡା ଭଞ୍ଜନଗର ନାମରେ ନାମିତ ହେଲା ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ ତଥା ତାଳପତ୍ର ପୋଥିରେ ସଂଗୃହିତ ଅନେକ ରଚନାକୁ ନନା ନିଜ ଚେଷ୍ଟାରେ ପ୍ରକାଶ କରିଛନ୍ତି ଏବଂ ତା ଉପରେ ଅନେକ ଉପାଦେୟ ପ୍ରବନ୍ଧମାନ ମଧ୍ୟ ରଚନା କରିଛନ୍ତି । ଆଜି ମଧ୍ୟ ନନାଙ୍କର ଅଭ୍ୟାସ ହେଉଛି—ଦୈନନ୍ଦିନ କିଛି କିଛି ଲେଖିବା, ପଢ଼ିବା ଓ ସୁଯୋଗ ମାତେ ବିଭିନ୍ନ ସଭାସମିତି ତଥା ସାହିତ୍ୟ ପୃଷ୍ଠପୋଷିତ ଅନୁଷ୍ଠାନରେ ନିଜକୁ ସାମିଲ କରିବା । ନିଜେ ପଢ଼ିବା ଓ ଲେଖିବା ସହ ଆଗାମୀ ଭବିଷ୍ୟତ ପାଇଁ ନନା ଯେମିତି ଏହି ପ୍ରକ୍ରିୟାକୁ ଅସମାପ୍ତ ରଖିଯିବାକୁ ଚାହାନ୍ତି । ମୋତେ ଲାଗେ ଏହା ଏକ ଅପ୍ରତିହତ ଧାରା, ଏକ ଜୀବନଚର୍ଯ୍ୟା—ସେଥିରେ ଅଦୃଷ୍ଟର ନିର୍ଦ୍ଦେଶନାମା ବଳବତ୍ତର—ନନା କେବଳ ହେଇ ଉଦ୍ଦେଶ୍ୟର କାର୍ଯ୍ୟ ନିର୍ବାହୀ ସମର୍ଥଦାର ଅନୁଭବୀ । ସେମାନଙ୍କ ସୃଷ୍ଟ ଏଇ ସାମାଜିକ ମୂଲ୍ୟବୋଧ ଓ ପରଂପରାକୁ ଆମେ ଆମର ସୁବିଧା ପାଇଁ ବିନିଯୁକ୍ତ କରୁଛେ, ଅଥଚ ଏକ ଅପ୍ରତିହତ ଧାରାକୁ ଅଧିକ ବ୍ୟାପକ ଓ ବୃହତ୍ତର କରିବାରେ ଆମର କିଛି

ଅବଦାନ ଅଛି କି ? ଏ ପ୍ରଶ୍ନ ମୁଁ ଏବଂ ମୋ ଭଳି ଉତ୍ତରଦାୟୀମାନେ ନିଜେ ନିଜକୁ ପଚାରିବାର ସମୟ ଆସିଛି । ସେଥିପାଇଁ ଭାରତୀୟ ଜୀବନରେ ଗୋଟିଏ ମହାନ ସନ୍ଦେଶ ରହିଛି ଯେ –"ବାପ ଥିଲା ପୁଅ ସବୁରେ ହାରେ ନାହିଁ ।" ଏହା କେବଳ ଏକ ପ୍ରବାଦ ନୁହେଁ, ଏକ ସାର୍ବକାଳୀନ ଚେତାବନୀ । ତେବେ ଆସନ୍ତୁ ସେମାନଙ୍କ ତ୍ୟାଗ, ନିଷ୍ଠା, ସହିଷ୍ଣୁତା ଓ ତପସ୍ୟାକୁ କ୍ରମାନ୍ୱୟରେ ସାଧନା କରିବାର ଅନୁଚିନ୍ତନଟିଏ କରିବା— ଯାହା ପ୍ରତ୍ୟକ୍ଷ ମଣ୍ଡିତ ହେବ ।



ଅଧ୍ୟାପକ
ଚୌଦ୍ୱାର ମହାବିଦ୍ୟାଳୟ

# ଆମ ମାଗୁଣି

## ପଣ୍ଡିତ ଅନନ୍ତରାମ କର ଶର୍ମା

'ଆମ ମାଗୁଣି' ଏକ ଅଗଣନ ବିରଳ ବ୍ୟକ୍ତିତ୍ୱ । ପିଲାଦିନରୁ ଦେଖେଁ ତାଙ୍କ । ଯାହା କହିବ ତାହା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ କରନ୍ତେ । ସମସ୍ତଙ୍କର ଇଷ୍ଟ । ଏଇଥିପାଇଁ, ତଥାପି ମୋର ସ୍ୱଭାବ କାହିଁକି ଲୋକଙ୍କୁ ହୃଦୟର ସ୍ନେହ ଭଲ ପାଇବା ।

ଏବେ ବୟସେ ବୁଢ଼ା ହେଲେଣି ବୟସ ଅନୁସାରେ, କିନ୍ତୁ ସେ ବୁଢ଼ା ହୋଇ ନାହାନ୍ତି । ତାଙ୍କ କର୍ମ ପ୍ରବଣ ଜୀବନ ତାଙ୍କୁ ବୁଢ଼ା ହେବା ଚିନ୍ତାରୁ ଦୂରେଇ ରଖିଛି । ସେ ବର୍ତ୍ତମାନ ଯୁବକ ପରି କାମ କରୁଛନ୍ତି । ତାଙ୍କର ଧନ ଜନ ଗୋପ ଲକ୍ଷ୍ମୀଭରା ଚହଟର ଜୀବନ, ଫୁଲ ଫୁଲ ପଲ ହସ ହସ ମୁହଁ ଯୁବକ ପରି ତୌର୍ଯ୍ୟ ବ୍ରତ ବାଁକୁ ବାଁକୁ ମଦନ ସଙ୍ଗର । ପିଲା ଦିନୁ ପାଠାଗାର ପାଇଁ ବହି ସଂଗ୍ରହ, ବଡ଼ ଲୋକଙ୍କ ସହିତ ମିଳାମିଶା, ଭୁତ୍ରରୁ ବଣା ନ ପଚୁଶୁ ବାମତି ହାସଲ କରିବେଇ ସମସ୍ତଙ୍କର ପ୍ରୀତିଭାଜନ ହେବା ତାଙ୍କ ସ୍ୱଭାବ ।

ସ୍ୱଦେଶୀ ଆନ୍ଦୋଳନ ଚାଲିଥାଏ । ସ୍ୱର୍ଗତ ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ଦୀନବନ୍ଧୁ ବେହେରା, ଓ ଗୋବିନ୍ଦ ପ୍ରଧାନଙ୍କୁ ଆମେ ଚିହ୍ନିଛେ ଦେଖିଛୁ, ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ସେ ଦୁଇ ଥର କାରାବରଣ କରିଥିଲେ ଦେଶ ପାଇଁ । ଅବଶ୍ୟ ସେତେବେଳେ ଏମାନଙ୍କ ଭିତରେ ସ୍ୱାଧୀନତା ଭୋଗ କରିବା ସ୍ୱପ୍ନ ନଥିଲା । ଥିଲା ଦେଶ ପାଇଁ ଆତ୍ମୋତ୍ସର୍ଗର ଅଦମ୍ୟ ଆଗ୍ରହ ।

ପରବର୍ତ୍ତୀ କାଳରେ କିନ୍ତୁ ତାଙ୍କ ଜୀବନର ସ୍ରୋତ ବଦଳିଗଲା । ସେ ତାଙ୍କ ନିଜ ପଥ ମୋଟାମୋଟି ଅଲଗା କରି ପ୍ରଜାମଙ୍ଗଳ ବାଟ୍ୟା ଦେଇ ଚାଲିଥିଲେ ଅବାଞ୍ଛିତ ଭାବରେ । ବନ୍ଦୀରୁ ମୁକ୍ତ ହୋଇ ଲୋକ ସଂପର୍କ ବିଭାଗର ଜିଲ୍ଲା ଅଧିକାରୀ ହୋଇ ଅବସର ନେବା ପରେ ଗୃହିଣୀ ଓ ସଂଗ୍ରାମୀ ଭତ୍ତା ପାଇ ବିଳାସୀ ଜୀବନ ଆରମ୍ଭ କଲେ । ପୁଅ ଝିଅଙ୍କୁ ମଣିଷ କରି ଗଢ଼ିଲେ । ଚିନ୍ତା ଭିତର କିଛି ନାହିଁ । ବାସ୍ତବିକ ଉଦ୍ଧର କାଳର ତାଙ୍କର ଏ ଏକ ଆଦର୍ଶ ସୁଖମୟ ଜୀବନ ।

ଯୁବକ କାଳରୁ ସେ ଭଞ୍ଜ ସାହିତ୍ୟ ପ୍ରତି ଆଗ୍ରହୀ । ଭଞ୍ଜବଂଶାନୁଚରିତ ଛପା କରି ସେ ଭଞ୍ଜ ସାହିତ୍ୟପ୍ରେମୀ ଭାବେ ପରିଚିତ ହେଲେ । ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ସାହାଯ୍ୟ ଏବଂ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ପ୍ରଭୃତିଙ୍କ ଲେଖଣି ପ୍ରଭୃତିରୁ ଅନେକ ତଥ୍ୟ ସଂଗ୍ରହ କରି ବିଭିନ୍ନ ସ୍ଥାନରେ ଥିବା ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ ତାଳପତ୍ର ପୋଥି ସଂଗ୍ରହ କରିବାରେ ସେ ସର୍ବଦା ତତ୍ପର । ଏପରି କେତେ ଗୋଟି ପୋଥିକୁ ସେ ଛାପା କରି ମଧ୍ୟ ଅନ୍ୟ-ମାନଙ୍କଠାରୁ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି । ରସଲକୋଣ୍ଡାକୁ ଭଞ୍ଜନଗର ନାମରେ ନାମିତ କରିବା ପାଇଁ ଯେଉଁମାନେ ଉଦ୍ୟମ କରୁଥିଲେ ସେମାନଙ୍କ ମଧ୍ୟରେ ଆମ ମାଗୁଣି ଅନ୍ୟତମ । ଭଞ୍ଜ ସାହିତ୍ୟ ପରିଷଦ ଓ ଭଞ୍ଜ ମଣ୍ଡପ ପ୍ରତିଷ୍ଠା ପରେ ବହୁ ବକ୍ତାଙ୍କୁ ଆମନ୍ତ୍ରଣ କରି ଭଞ୍ଜ ଜୟନ୍ତୀ ପାଳନ ହେଉଛି ଭଞ୍ଜୀୟ ଜ୍ଞାନ ଚର୍ଚ୍ଚାରେ ତାଙ୍କର ପ୍ରଗାଢ଼ ଆଗ୍ରହ ଥିବା ସମସ୍ତେ ଜାଣନ୍ତି । ତାଙ୍କୁ ଅଭିନନ୍ଦିତ କରିବା ପାଇଁ ଭଞ୍ଜନଗରରୁ ଏକ କମିଟି ଗଠିତ ହେବାର ଶୁଣି ବଡ଼ ଆନନ୍ଦିତ ହେଲି ।

ଆଦିବାସୀ ସଂସ୍କୃତି, ଓ ଭଞ୍ଜ ସାହିତ୍ୟ ଭିତରେ କେତେକ କୌତୁହଳପ୍ରଦ ତଥ୍ୟ ସେ ପ୍ରବନ୍ଧ ଆକାରରେ ପ୍ରକାଶ କରିଛନ୍ତି ଏବଂ ଦୂରଦର୍ଶନ ଓ ଆକାଶ ବାଣୀରେ ଭଞ୍ଜସାହିତ୍ୟ ଗବେଷକ ଭାବେ ସାକ୍ଷାତକାର କରିବା ଜଣାଯାଇଛି । ଦୀର୍ଘ ପଚିଶ ବର୍ଷର ଧାରାବାହିକ କର୍ମ ସୂଚନା ଏ କ୍ଷୁଦ୍ର ପ୍ରବନ୍ଧରେ ସ୍ଥାନ ପାଇବା ଅସମ୍ଭବ । ଅତଏବ ଅଭିନନ୍ଦନ କମିଟି ତରଫରୁ ଅଭିନନ୍ଦିତ ହୋଇ ଆମ ମାଗୁଣି ସପରିବାରରେ ସୁଖରେ ରହି ଆମକୁ ଉତ୍ସାହାନ୍ତୁ ଏହା ମୋର କାମନା ।

ଜଗନ୍ନାଥ ପ୍ରସାଦ
ଜଗନ୍ନାଥପୁର ସାଶନ
ଜିଲ୍ଲା ଗଞ୍ଜାମ ପି-୭୬୧୧୨୧

# ଏକ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ

ଡକ୍ଟର ପ୍ରଫୁଲ୍ଲ କୁମାର ଦାଶ

ପ୍ରାଚୀନ ଓଡ଼ିଆ ସାହିତ୍ୟର ଲୁପ୍ତ ରତ୍ନ ଉଦ୍ଧାର କାର୍ଯ୍ୟରେ ଉତ୍କଳର ଯେଉଁ କେତେ ଜଣ କର୍ମପୁରୁଷ ଗତ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଧରି ନିଜକୁ ଉତ୍ସର୍ଗ କରି ଆସିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ମାଗୁଣି ଦାସଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଗଞ୍ଜାମ ଜିଲ୍ଲାର ଘୁମୁସର ଇଷ୍ଟେଟ୍ ଅନ୍ତର୍ଗତ ଜଗନ୍ନାଥ ପ୍ରସାଦ ନିକଟବର୍ତ୍ତୀ ଜଗନ୍ନାଥପୁର ଶାସନରେ ୧୯୧୦ ମସିହାରେ ଏହି ପ୍ରତିଭାଶାଳୀ ଏକନିଷ୍ଠ ସାଧକଙ୍କର ଆବିର୍ଭାବ ଘଟିଥିଲା । ଯେଉଁ ସମୟରେ ସମଗ୍ର ଓଡ଼ିଶାରେ ଅଙ୍ଗୁଳି ଅଗ୍ରରେ ଗଣିଲା ପରି ସ୍ୱଳ୍ପ କେତୋଟି ମାତ୍ର ହାଇସ୍କୁଲ ଥିଲା । ସେହି ସମୟରେ ସେ ସ୍ୱକୀୟ ଉଦ୍ୟମ ବଳରେ ମାଟ୍ରିକ୍ୟୁଲେସନ୍ ପାସ୍ କରିଥିଲେ । ସେତେବେଳେ ମାଟ୍ରିକ୍ ପାସ୍ କରିଥିବା ଯୁବକମାନଙ୍କୁ ଗୋଟିଏ ଲେଖାଏଁ ଭଲ ସରକାରୀ ଚାକିରୀ ମିଳି ପାରୁଥିଲା । ମାତ୍ର ମାଗୁଣିବାବୁ ଚାକିରୀର ମମତା ତ୍ୟାଗ ପୂର୍ବକ ଜାତୀୟ ସ୍ରୋତରେ ନିଜକୁ ଭସାଇ ଦେଇଥିଲେ । ମହାତ୍ମାଗାନ୍ଧୀଙ୍କ ଆହ୍ୱାନ କ୍ରମେ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଏଥିପାଇଁ ତାହାଙ୍କୁ ବହୁ ଆର୍ଥିକ ଓ ଶାରୀରିକ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଥିଲା । ତଥାପି ଜାତୀୟ ମମତାର ମୂଲ୍ୟବୋଧ ଦୃଷ୍ଟିରୁ ସେ ଏଥି ପ୍ରତି ଟିକେ ହେଲେ ଭ୍ରୂକ୍ଷେପ କରି ନ ଥିଲେ ଏବଂ ଦେଶ ମାତୃକାର ସେବାରେ ନିଜକୁ ଉତ୍ସର୍ଗ କରି ଦେଇଥିଲେ ।

ଦେଶ ସ୍ୱାଧୀନ ହେବା ପରେ ସେ ସରକାରୀ ଚାକିରୀରେ ଯୋଗଦାନ କରିଥିଲେ । ମନେ ହୁଏ, ବୈଦେଶିକ ରାଜ ଶକ୍ତିର ଅଧୀନରେ ନିଜକୁ ବିକ୍ରୟ କରିଦେବା ତାହାଙ୍କର ନୀତି ବିରୁଦ୍ଧ ଥିଲା । ସୁତରାଂ, ସ୍ୱାଧୀନ ଭାରତରେ ସ୍ୱଦେଶୀ ସରକାର ଅଧୀନରେ ହିଁ ସେ ସରକାରୀ ଚାକିରୀକୁ ଗ୍ରହଣ କରିଥିଲେ ।

ସ୍ୱର୍ଗତ ମାଗୁଣିବାବୁ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ଦେଶହିତୈଷୀ ରୂପେ ଯେତେ ପରିଚିତ ନୁହନ୍ତି, ଜଣେ ନୀରବ ସାହିତ୍ୟ ସାଧକ ଓ

ପ୍ରତିଭାଶାଳୀ ବ୍ୟକ୍ତି ରୂପେ କଦପେକ୍ଷା ଅଧିକ ସୁପରିଚିତ । ତାହାଙ୍କର ପ୍ରତିଭା ଓ ବ୍ୟକ୍ତିତ୍ୱ ବିଷୟ ଚିନ୍ତା କରିବାକୁ ଗଲ ବେଳେ ତାଙ୍କ କୃତିତ୍ୱର ନିମ୍ନ ଦେଉଛି ଗୋଟି ବିଶିଷ୍ଟ ଦିଗ ପ୍ରତି ଚକ୍ଷୁ ସ୍ୱତଃ ଆକୃଷ୍ଟ ହୋଇଯାଏ, ତାହା ହେଉଛି ।

୧) ପ୍ରାଚୀନ ଉତ୍କଳୀୟ ସାରସ୍ୱତ ସମ୍ପଦର ଉଦ୍ଧାରକାରୀ ।

୨) ଭଞ୍ଜ ସାହିତ୍ୟର ସୁନାମ ଧନ୍ୟ ଆଲୋଚକ ଓ ପ୍ରଚାରକ ।

୩) ଉତ୍କଳୀୟ ମନ୍ଦିର ସଂସ୍କୃତିର ଗବେଷକ ।

୪) ଓଡ଼ିଶାର ଆଦିବାସୀ ସଂସ୍କୃତି ଓ ଜୀବନଧାରାର ସମୀକ୍ଷକ ।

୫) ଚିନ୍ତାଶୀଳ ପ୍ରାବନ୍ଧିକ ଓ ସମାଲୋଚକ ।

୬) କାବ୍ୟ କବିତାର ସ୍ରଷ୍ଟା ।

୭) ପ୍ରାକୃତିକ ଉତ୍କଳର ବିବିଧ ଦର୍ଶନୀୟ ସ୍ଥାନର ପର୍ଯ୍ୟଟକ ଓ ପ୍ରଚାରକ ।

ଏ ପ୍ରସଙ୍ଗରେ ଉଲ୍ଲେଖ କରିବା କଥା ଯେ, ପ୍ରାଚୀନ ଓଡ଼ିଆ ସାହିତ୍ୟର ବହୁ ଶ୍ରମବାନ୍ ସ୍ରଷ୍ଟାଙ୍କର ଅନେକ ମୂଲ୍ୟବାନ୍ ରଚନା କାଳ ଗର୍ଭରେ ଲୀନ ହୋଇଯାଇଛି । ତଥାପି କେତେ ଜଣ ଯୋଗଜନ୍ମା ପୁରୁଷଙ୍କ ନିରଳସ ସାଧନା ଓ ଐକାନ୍ତିକ ପ୍ରଚେଷ୍ଟା ଫଳରେ ଆଜି ଯେଉଁ କେତେ ଗୋଟି ପ୍ରାଚୀନ କୃତି କାଳମୁଖରୁ ଉଦ୍ଧାର ପୂର୍ବକ ଲୋକଲୋଚନକୁ ଆସି ପାରିଛି, ତାହାକୁ ନେଇ ଆମ ଜାତି ଗର୍ବ ଓ ଗୌରବ ଅନୁଭବ କରିଥାଏ । ଏହିପରି ନିରଳସ ସାଧକମାନଙ୍କ ମଧ୍ୟରେ ମାଗୁଣି ବାବୁ ଅନ୍ୟତମ ଅଟନ୍ତି । ତାହାଙ୍କ ଜନ୍ମ ଭୂମିର ମହାନ୍ କବି ଉପେନ୍ଦ୍ରଭଞ୍ଜ ପ୍ରକୃତରେ କେତେ ଗୋଟି ଗ୍ରନ୍ଥ ଲେଖି ଥିଲେ । ଅଦ୍ୟାବଧି ଠିକ୍ ଭାବରେ ନିର୍ଣ୍ଣିତ ହୋଇ ପାରିନାହିଁ । କାରଣ, ତାହାଙ୍କ ଲେଖନୀସୃଷ୍ଟ ବହୁ ମୂଲ୍ୟବାନ୍ ସାରସ୍ୱତ କୃତି ମହାକାଳ ଗର୍ଭରେ ଲୀନ ହୋଇ ଯାଇଛି । ମାଗୁଣି ବାବୁଙ୍କ ଭଳି କେତେ ଜଣ ନିଃସ୍ୱାର୍ଥପର ଗୁଣଗ୍ରାହୀ ବ୍ୟକ୍ତି କାଳର ଧ୍ୱଂସସ୍ତୂପ ତଳୁ ମଝି ମଝି କେଉଁଠିଏ ଗୋଟିଏ ମୂଲ୍ୟବାନ ରତ୍ନ ଉଦ୍ଧାର ପୂର୍ବକ ଜାତି ଉଦ୍ଦେଶ୍ୟରେ ଅର୍ପଣ କରୁଛନ୍ତି । ତାହାଙ୍କ ପ୍ରଚେଷ୍ଟାରେ ଉପେନ୍ଦ୍ରଭଞ୍ଜଙ୍କ 'ରସିକାନୁଚିନ୍ତା' 'ବୋଲଟପାଳି', ବିବିଧ ସଙ୍ଗୀତ ଓ ଭଜନ ଏବଂ 'ଚଉତିଶା' ପ୍ରଭୃତି ଗ୍ରନ୍ଥ ପ୍ରକାଶିତ ହୋଇ ଭଞ୍ଜ ସାହିତ୍ୟ ଆଲୋଚକମାନଙ୍କ , ଦୃଷ୍ଟିକୁ ଆସି ପାରିଛି । ଏହା ସଙ୍ଗେ ସଙ୍ଗେ 'ଭଞ୍ଜବଂଶାନୁଚରିତ' 'ଭଞ୍ଜବଂଶ ଓ ଘୁମୁସର ବିଦ୍ରୋହ' 'ଭଞ୍ଜବଂଶାବଳୀ' ପ୍ରଭୃତି ଗ୍ରନ୍ଥ ସହିତ ଧନଞ୍ଜୟ ଭଞ୍ଜଙ୍କ 'କୃଷ୍ଣକ୍ରୀଡ଼ା' ଓ ଭକ୍ତଚରଣଙ୍କ "ରଘୁନାଥ ଜଣାଣ"

ପ୍ରଭୃତି ଗ୍ରନ୍ଥକୁ ସେ ଉଦ୍ଧାର ପୂର୍ବକ ପ୍ରକାଶ କରିଛନ୍ତି । ଏହି ଦୃଷ୍ଟିରୁ ସାଂପ୍ରତିକ ଓଡ଼ିଶାରୁ ଲୁପ୍ତ ସାରସ୍ୱତ ସମ୍ପଦର ଉଦ୍ଧାରକର୍ତ୍ତା ଭାବରେ ତାହାଙ୍କର ଅବଦାନ ଅବିସ୍ମରଣୀୟ ।

କବି ଉପେନ୍ଦ୍ର ଭଞ୍ଜଙ୍କ ରଚିତ ବହୁ ସାହିତ୍ୟିକ କୃତି ଉଦ୍ଧାର ସଙ୍ଗେ ସଙ୍ଗେ ଭଞ୍ଜ ସାହିତ୍ୟ ସମ୍ପର୍କୀୟ ବିଭିନ୍ନ ଆଲୋଚନା ମୂଳକ ପ୍ରବନ୍ଧ ରଚନା ପୂର୍ବକ ଭଞ୍ଜୀୟ କଳାକୃତିର ଦ୍ୱାର ଦେଶରେ ସେ ଧାରାବାହିକ ଉଦ୍ୟମ କରି ଆସିଥିବା ଦେଖାଯାଏ । ତାହାଙ୍କ ଲିଖିତ 'କମ୍ପ୍ୟୁଟରରେ ଭଞ୍ଜ' ଓ 'କବିସମ୍ରାଟ ଉପେନ୍ଦ୍ରଭଞ୍ଜ' ତଥା ସାମୟିକ ଭାବେ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ଏବଂ ଦୂରଦର୍ଶନ ଓ ଆକାଶବାଣୀ ମାଧ୍ୟମରେ ପ୍ରଚାରିତ ଭଞ୍ଜଙ୍କ କୃତିରାଜି ସଂପର୍କୀୟ ବହୁ ପ୍ରବନ୍ଧ ଏହାର ଯଥାର୍ଥ ପ୍ରମାଣ ଯୋଗାଇଥାଏ । ସୁତରାଂ ଭଞ୍ଜ ସାହିତ୍ୟର ସୁଯୋଗ୍ୟ ପ୍ରଚାରକ ଏବଂ ପ୍ରବୀଣ ଆଲୋଚକ ଭାବରେ ମାଗୁଣି ବାବୁଙ୍କ ଅବଦାନ ଚିରକାଳ ଲାଗି ଅକ୍ଷୟ ରହିବ ।

ବୃଗୁଡ଼ାର ବିରଞ୍ଚିନାରାୟଣ ମନ୍ଦିର ଓ ଭଞ୍ଜ ଭୂମିର ଅନ୍ୟାନ୍ୟ ଦେବ ଦେବୀ ମନ୍ଦିର, ଫୁଲବାଣି ଜିଲ୍ଲାର ବିଖ୍ୟାତ ବୌଦ୍ଧବିହାର ବୈରୁପାକ୍ଷ ମନ୍ଦିର, ବରକେଲର ଲାଙ୍ଗୁଡ଼ାବା ମନ୍ଦିର ବିଭିନ୍ନ ବନ୍ଧନ ନୃତ୍ୟ, ନଟଚର୍ଯ୍ୟା ଓ ତଥ୍ୟ ସମ୍ବଳିତ ପ୍ରବନ୍ଧରାଜି ତାହାଙ୍କ ପ୍ରତିଭାର ଅନ୍ୟତମ ନିଦର୍ଶନ । ପ୍ରାଚୀନ ଓଡ଼ିଶାର ଦେବଦେବୀଙ୍କ ଓ ମନ୍ଦିର କଳା ସମ୍ବନ୍ଧ ଉତ୍କଳବାସୀଙ୍କୁ ପରିଚିତ କରାଇବା ଦିଗରେ ସେ ନିଜସ୍ୱ ଉଦ୍ୟମ ଅବ୍ୟାହତ ରଖିଛନ୍ତି ।

ଓଡ଼ିଶାର ଅନ୍ୟତମ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଫୁଲବାଣି ଜିଲ୍ଲାରେ ତାହାଙ୍କ କର୍ମମୟ ଜୀବନର ବହୁ କାଳ ଅତିବାହିତ ହୋଇଥିଲା । ସେଠାକାର ଆଦିମ ଅଧିବାସୀ କନ୍ଧମାନଙ୍କର ଜୀବନଧାରା ସହିତ ସେ ନିଜକୁ ଓତପ୍ରୋତ ଭାବରେ ଜଡ଼ିତ କରାଇବା ସଙ୍ଗେ ସଙ୍ଗେ ସେମାନଙ୍କ ସାଂସ୍କୃତିକ ଏବଂ ସାମାଜିକ ପରଂପରାକୁ ଲୋକ ଦୃଷ୍ଟିକୁ ଆଣି ପାରିଛନ୍ତି । ଏ ସଂପର୍କୀୟ ତାହାଙ୍କର ବହୁ ପ୍ରବନ୍ଧ ପ୍ରକାଶ ଲାଭ କରିଛି ।

ବିଭିନ୍ନ ସମୟରେ ତାହାଙ୍କ ଲେଖନୀରୁ ବହୁ ଜାତୀୟ ଉଦ୍‌ବୋଧନ ମୂଳକ କବିତା ଏବଂ ବହୁ ସାହିତ୍ୟିକ ଓ ଚିନ୍ତାଶୀଳ ପ୍ରବନ୍ଧ ସୃଷ୍ଟି ହୋଇଛି । ଅନେକ ପ୍ରବନ୍ଧରେ ତାହାଙ୍କର ସୂକ୍ଷ୍ମ ବିଚାରଧାରା ତଥା ମୌଳିକ ଚିନ୍ତାସୂତ୍ର

ଦେଖିବାକୁ ମିଳିଥାଏ । ସେ ଯେଉଁ ଯେଉଁ ସ୍ଥାନକୁ ଭ୍ରମଣ କରିବା ନିମିତ୍ତ ଯାଇଛନ୍ତି, ସେହି ସେହି ସ୍ଥାନ ସଂପର୍କୀୟ ପର୍ଯ୍ୟଟନ ମୂଳକ ଓ ତଥ୍ୟ-ସମୃଦ୍ଧ ପ୍ରବନ୍ଧଗୁଡ଼ିକ ଲେଖି ପ୍ରକାଶ କରିଛନ୍ତି । ଏ ପ୍ରସଙ୍ଗରେ ତାହାଙ୍କ ଲିଖିତ 'ଦୁଦୁମା ଜଳ ପ୍ରପାତ', 'ଓଡ଼ିଶାର ଦାର୍ଜିଲିଂ', 'ମନ୍ଦାକିନୀ କୂଳର କଥା', 'ଗନ୍ଧମାଦନର ବିଚିତ୍ର ପାହାଡ଼', 'ମାଳତୀ ଗଡ଼ର ବିଷ୍ଣୁ ଦୀପ' ପ୍ରଭୃତି ପ୍ରବନ୍ଧ ବିଶେଷ ଉଲ୍ଲେଖ ଯୋଗ୍ୟ ।

ସାରସ୍ୱତ ସାଧନା ସହିତ ବିବିଧ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନର ପ୍ରତିଷ୍ଠା, ଜାତୀୟ ଅନୁଷ୍ଠାନ ଗଠନ, ସମାଜ ସେବା ପ୍ରଭୃତି କ୍ଷେତ୍ରରେ ମଧ୍ୟ ତାହାଙ୍କର ଅବଦାନ ଯଥେଷ୍ଟ ଅଧିକ । ଏହି ମହାନ୍ ପ୍ରତିଭାଶାଳୀ ବ୍ୟକ୍ତି ତାହାଙ୍କର ଏତାଦୃଶ ବିବିଧ କୃତିତ୍ୱ ପାଇଁ ଭାରତ ସରକାର, ଓଡ଼ିଶା ସରକାର ତଥା ଓଡ଼ିଶାର ବିବିଧ ସାରସ୍ୱତ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଛନ୍ତି । ପଞ୍ଚସ୍ତରୀ ବର୍ଷରୁ ଅଧିକ ବୟସରେ ଉପନୀତ ହୋଇଥିଲେ ମଧ୍ୟ ତାହାଙ୍କର ସାଧନାସ୍ରୋତ ଅବାରିତ ଗତିରେ ଚାଲିଛି । ଯୁବକ ସୁଲଭ ଉତ୍ସାହ ଓ ଉଦ୍ଦୀପନା ସହିତ ବାର୍ଦ୍ଧକ୍ୟର ପ୍ରଜ୍ଞା ହେଉଛି ତାହାଙ୍କ ବ୍ୟକ୍ତିତ୍ୱର ମହାନ୍ ବୈଶିଷ୍ଟ୍ୟ । ଆଜି ତାହାଙ୍କ ପ୍ରତିଭାର କେତେ ଗୋଟି ବିଶିଷ୍ଟ ଦିଗ ଉପରେ ଆଲୋକପାତ କରିବା ଅବସରରେ ଏହି ମହାନ୍ ସାଧକଙ୍କର ନିରାମୟ ଓ କର୍ମମୁଖର ଦୀର୍ଘ ଜୀବନ ନିମିତ୍ତ ଓଡ଼ିଶାର ଜାତୀୟ ଦେବତା ଶ୍ରୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବିନମ୍ର ପ୍ରାର୍ଥନା କରୁଛି ।



ଅଧ୍ୟାପକ
ଖ୍ରୀଷ୍ଟ କଲେଜ
କଟକ

# ସାଧକ ମାଗୁଣି ଦାଶ

ପ୍ରଫୁଲ୍ଲ କୁମାର ପାଇକରାୟ

ମାଗୁଣି ବାବୁଙ୍କ ସହ ସାକ୍ଷାତ ଖୋର୍ଦ୍ଧା କଲେଜରେ କେଉଁ ଘଣ୍ଟା ପାଇଁ ହୋଇଥିଲା । ବିଷ୍ଣୁପୁରାଣ ମତରେ ପୁଣ୍ୟାତ୍ମାଙ୍କ ସହିତ ସାତ ପାଦ ଏକାଠି ଯିବା ହିଁ ବନ୍ଧୁତ୍ୱ ପାଇଁ ଯଥେଷ୍ଟ । ଏହା ସତ କଥା । ସେହି କେତେ ଘଣ୍ଟା ମଧ୍ୟରେ ତାଙ୍କ ମହାନୁଭବତାର ପରିଚୟ ମିଳିଥିଲା ଓ ସେ ମୋ ହୃଦୟର ବନ୍ଧୁତ୍ୱ ସ୍ଥାନରେ ଆବଦ୍ଧ ହୋଇଥିଲେ । ପୂର୍ବରୁ ବିଭିନ୍ନ ଲେଖା ମାଧ୍ୟମରେ ତାଙ୍କ ସାଧନା ବିଷୟରେ ବିଶେଷଭାବେ ଅବଗତ ହୋଇଥିଲି । ସେହି ସରଳ ପ୍ରକୃତିଧର ସାଧକ ସମଗ୍ର ଜୀବନ କାଳ ମଧ୍ୟରେ ବିଭିନ୍ନ କାର୍ଯ୍ୟାବଳୀ ମଧ୍ୟରେ ଯଥାସାଧ୍ୟ ବାଣୀ ଆରାଧନା କରି କାଳାତିପାତ କରୁଛନ୍ତି । ସଂସାରର ସ୍ତ୍ରୀ ସନ୍ତାନଙ୍କୁ ଶ୍ରେୟ ନ ମଣି ସାରସ୍ୱତ ସାଧନାରେ ନିଜକୁ ନିୟୋଜିତ କରି ରଖିଛନ୍ତି । ସେ ଭଲ ଭାବେ ଜାଣନ୍ତି ଶାସ୍ତ୍ରର କୌଣସି ସୀମା ନାହିଁ । ମାନବର ଆୟୁଷ ଖୁବ୍ କମ୍ ଏବଂ ବିଘ୍ନ ଅନେକ । ତେଣୁ ହଂସ ଯେପରି ପାଣିରୁ କ୍ଷୀରକୁ ଅଲଗା କରି ତାକୁ ଗ୍ରହଣ କରିଥାଏ, ସେହିପରି ସେ ଅନନ୍ତ ବେଦ ଶାସ୍ତ୍ର ମଧ୍ୟରୁ ସାର ତତ୍ତ୍ୱକୁ ଗ୍ରହଣ କରି ଅସାରକୁ ପରିତ୍ୟାଗ ପୂର୍ବକ କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଛନ୍ତି ।

ଅନନ୍ତ ପାରଂ କିଲ ଶବ୍ଦ ଶାସ୍ତ୍ରଂ ସ୍ୱଳ୍ପଂ ତଥାୟୁର୍ବହବଶ୍ଚ ବିଘ୍ନାଃ ।
ସାରଂ ତତୋ ଗ୍ରାହ୍ୟମପାସ୍ୟ ଫଲ୍ଗୁ ହଂସୈର୍ଯଥା କ୍ଷୀରମିବାମ୍ବୁମଧ୍ୟାତ୍ ॥
(ପଞ୍ଚତନ୍ତ୍ର)

ନିଜର ପ୍ରସନ୍ନତା ଓ କର୍ମଠତା ଦ୍ୱାରା ସେ ତାଙ୍କର ସନ୍ତାପ ଓ ବେଦନାଦିକୁ ଲାଘବ କରିବାରେ ସଫଳ ହୋଇ ପାରିଛନ୍ତି । ପ୍ରାଚୁର୍ଯ୍ୟ ତାଙ୍କୁ ଆତ୍ମ ବିଭୋର କରାଇ ପାରିନାହିଁ କିମ୍ବା ଦୁଃଖ ତାଙ୍କୁ ନିରୁତ୍ସାହ ତଥା ଭଗ୍ନ ମନୋରଥ କରାଇ ପାରିନାହିଁ । କର୍ମ ଓ କର୍ତ୍ତବ୍ୟ ପ୍ରତି ଆଗ୍ରହୀ ଏହି ଯୋଗଜନ୍ମା ପୁରୁଷ ନିରନ୍ତର ଦେଶ ଓ ଦଶର ଉନ୍ନତି ଚିନ୍ତାରେ ମଗ୍ନ ରହି ଅହରହ ଉଦ୍ୟମଶୀଳ ରହିଥାନ୍ତି । ତାଙ୍କର ଦୃଢ଼ ଧାରଣା କେବଳ ଚିନ୍ତା ବା କଳ୍ପନା

ଦ୍ୱାରା କାର୍ଯ୍ୟ ସିଦ୍ଧ ହୁଏ ନାହିଁ । ସେଥିପାଇଁ ଉଦ୍ୟମ କରିବା ହେଲା ମୂଳ କଥା । ପ୍ରତ୍ୟେକ କାର୍ଯ୍ୟ ସିଦ୍ଧି ମୂଳରେ ସଦୁଦ୍ୟମ ହିଁ ପ୍ରଥମ ସୋପାନ ରୂପେ ବିବେଚିତ ହୋଇଥାଏ ।

"ଉଦ୍ୟମେନହି ସିଦ୍ଧ୍ୟନ୍ତି କାର୍ଯ୍ୟାଣି ନ ମନୋରଥୈ ।
ଯାଦୃଶୀ ଭାବନା ଯସ୍ୟ ସିଦ୍ଧି ର୍ଭବତି ତାଦୃଶୀ ।।"

ସାମ୍ପ୍ରତିକ କଳୁଷିତ ସମାଜରେ ସାଧାରଣତଃ ଦେଖା ଯାଉଛି ଯେ ଉଚ୍ଚ ଶିକ୍ଷିତ ତଥା ଉଚ୍ଚ ପଦାଧିକାରୀମାନଙ୍କର ମନ ବଚନ ଓ କର୍ମରେ ଯେଉଁ ଅସଙ୍ଗତି ଓ ବ୍ୟତିକ୍ରମ ଦେଖାଯାଉଛି ମାଗୁଣି ବାବୁ ସେଥିରୁ ସମ୍ପୂର୍ଣ୍ଣ ମୁକ୍ତ ରହି ମନ ବଚନ ଓ କର୍ମରେ ସର୍ବଦା ଏକ ରୂପେ ଦେଖାଇଛନ୍ତି ।

ମନସ୍ୟୈକ୍ୟଂ ବଚସ୍ୟୈକ୍ୟଂ କର୍ମଣ୍ୟୈକ୍ୟଂ ମହାତ୍ମାନାମ୍ ।
ମନସ୍ୟନ୍ୟଦ୍ ବଚସ୍ୟନ୍ୟତ୍ କର୍ମଣ୍ୟନ୍ୟଦ୍ ଦୁରାତ୍ମନାମ୍ ।।
(ହିତୋପଦେଶ)

ଆଜି ଜାତୀୟ ଜୀବନର ସମସ୍ତ ମହାତ୍ମକ ଗୌରବ ବିଲୋପ ହେଲା ପରି ମନେ ହେଉଛି । ତ୍ୟାଗର ମଧୁମୟ ଧାରାରେ ଯେଉଁ ଦେଶ ସମଗ୍ର ବିଶ୍ୱରେ ଅତୁଳନୀୟ ଥିଲା, ସେ ଦେଶ ଏବେ ଭୋଗର ଆପାତ ମଧୁର ବିମୋହିନୀ ଚକ୍ରରେ ବିଶେଷ ଭାବେ ଆକର୍ଷିତ ହେଉଛି । କର୍ତ୍ତବ୍ୟ ପରାୟଣ ହେବା ଅପେକ୍ଷା ବେଦ ଉପନିଷଦ ଦେଶର ମଣିଷ ଆଜି ଅସହାୟ ହୋଇ ଭାଗ୍ୟଦେବୀର ଶରଣ ପଶୁଛି । ଆଳସ୍ୟ ଓ ଉପଭୋଗ ମଧ୍ୟରେ ବୁଡ଼ି ରହି ସେ ଭାଗ୍ୟ ଓ ଭଗବାନର ଦୋହାଇ ଦେଉଛି ! ସେ ଜାଣିପାରୁ ନାହିଁ ଉଦ୍ୟମ, ସାହସ, ଧୈର୍ଯ୍ୟ, ବୁଦ୍ଧି, ଶକ୍ତି ଓ ପୁରୁଷାର୍ଥ ଦ୍ୱାରା ହିଁ ଏ ଜଗତରେ ଅସାଧ୍ୟ ସାଧନ ହୋଇଥାଏ । ଯେଉଁ ବ୍ୟକ୍ତି ପାଖରେ ଉକ୍ତ ଗୁଣ ଗୁଡ଼ିକ ରହିଥାଏ, ତାହାକୁ ଭଗବାନ ସ୍ୱତଃ ସାହାଯ୍ୟ କରିଥାନ୍ତି ।

"ଉଦ୍ୟମଃ ସାହସଂ ଧୈର୍ଯ୍ୟଂ ବୁଦ୍ଧିଃ ଶକ୍ତିଃ ପରାକ୍ରମଃ ।
ଷଡ଼େତେ ଯତ୍ର ବର୍ତ୍ତନ୍ତେ ତତ୍ର ଦେବଃ ସହାୟ କୃତ୍ " ।।

ମାଗୁଣି ବାବୁ ଏ ସମସ୍ତ ସୁଗୁଣର ଆଧାର ଅଟନ୍ତି । ସେ ଭାଗ୍ୟ ଦେବୀର ଶରଣ ନ ନେଇ କର୍ମ ଦେବତାର ଶରଣ ନେଇଛନ୍ତି । କର୍ମ ହିଁ ତାଙ୍କର ଧର୍ମ, ବିବେକ ହିଁ ତାଙ୍କର ଦର୍ଶନ ହୋଇଛି । ଉତ୍କଳର ଜଣେ ମହାନ୍ ପଣ୍ଡିତ

ମୁରାରି ମିଶ୍ର ବଜ୍ରଗମ୍ଭୀର କଣ୍ଠରେ ସେହି ଉଦାର ବାଣୀ ଶୁଣାଇଛନ୍ତି ଯେ ସାଧାରଣତଃ କବିମାନେ ଦେବଦେବୀଙ୍କ ପ୍ରସାଦରୁ କବିତ୍ୱ ଶକ୍ତି ପ୍ରାପ୍ତ ହୋଇଥାଆନ୍ତି ବୋଲି କୁହାଯାଇଥାଏ, ମାତ୍ର କବି ମୁରାରି ଏଥିପାଇଁ ଗୁରୁଙ୍କଠାରୁ କଠିନ ପରିଶ୍ରମ ସହ ଏ ବିଦ୍ୟା ଶିକ୍ଷା କରିଛନ୍ତି । ଅଗାଧ ସାଧନା ଦ୍ୱାରା କବିତ୍ୱ ପ୍ରାପ୍ତ ହୋଇଛନ୍ତି ।

"ଦେବୀଂବାଚ ମୁପାସତେ ହି ବହବଃ ସାରଂତ ସାରସ୍ୱତମ୍ ।।
ଜାନୀତେ ନିତରାମସୌ ଗୁରୁକୁଳ କ୍ଲିଷ୍ଟୋ ମୁରାରିଃ କବିଃ ।।

(ଅନର୍ଘରାଘବ)

ମାଗୁଣି ବାବୁ ମୁରାରିଙ୍କ ଏହି ଦୃଢ଼ ଉକ୍ତିରେ ବିଶ୍ୱାସ ସ୍ଥାପନ କରିଛନ୍ତି । ସେ କେବଳ ଶାସ୍ତ୍ରାଧ୍ୟୟନରେ ନିଜକୁ ଆବଦ୍ଧ ନ ରଖି ତାହା ଦ୍ୱାରା କ୍ରିୟାବାନ ହୋଇ ନିଜକୁ କର୍ମମୁଖର ଓ ଚଳଚଞ୍ଚଳ କରାଇ ପାରିଛନ୍ତି ।

"ଶାସ୍ତ୍ରାଣ୍ୟଧୀତ୍ୟାପି ଭବନ୍ତି ମୂର୍ଖାଃ ଯସ୍ତୁ କ୍ରିୟାବାନ ପୁରୁଷଃ ସବିଦ୍ୱାନ୍ ।

ସେ କେବଳ କର୍ମ ଓ କର୍ତ୍ତବ୍ୟ ମଧ୍ୟରେ ଅନ୍ତରଙ୍ଗ ନିଜକୁ ନିଯୋଜିତ ରଖି ପାରିଛନ୍ତି । କର୍ମ ତାଙ୍କଠାରେ ଲିପ୍ତ ହୋଇନାହିଁ ସେ କର୍ମରେ ଲିପ୍ତ ହୋଇ ଯାଇଛନ୍ତି ।

କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ ।
ଏବଂ ତ୍ୱୟି ନାନ୍ୟଥେତୋଽସ୍ତି ନ କର୍ମ ଲିପ୍ୟତେ ନରେ ।।

(ଈଶାବାସ୍ୟୋପନିଷଦ)

ଓଡ଼ିଆ ସାହିତ୍ୟର ସମାଗ୍ରିକ ଉନ୍ନତି ନିମିତ୍ତ ମାଗୁଣି ବାବୁ ସଦା ତତ୍ପର ଥିଲେ । ବିଶେଷତଃ ଭଞ୍ଜ ସାହିତ୍ୟର ପ୍ରସାର ଓ ପ୍ରଚାର ଦିଗରେ ତାଙ୍କ ସାଧନାର ତୁଳନା ନାହିଁ । ଉପେନ୍ଦ୍ରଙ୍କ ସମ୍ପର୍କରେ ସେ ପଞ୍ଚତିରିଶଟି ପ୍ରବନ୍ଧ ଲେଖିଛନ୍ତି । ସେଗୁଡ଼ିକ ମଧ୍ୟରୁ ଅନେକରେ ବହୁ ଅନାଲୋଚିତ ଦିଗ ଉପରେ ସେ ଆଲୋକପାତ କରିଛନ୍ତି । ପୂର୍ବରୁ ଉପେନ୍ଦ୍ରଙ୍କ ସମ୍ପର୍କରେ ଯେଉଁ କିମ୍ବଦନ୍ତୀଗୁଡ଼ିକ ଲୋକମୁଖରେ ପ୍ରଚଳିତ ଥିଲା ସେଗୁଡ଼ିକର ଆଲୋଚନା କରି ଏକ 'କିମ୍ବଦନ୍ତୀରେ ଭଞ୍ଜ' ନାମକ ଏକ ଚମତ୍କାର ପୁସ୍ତିକାଟିଏ ପ୍ରକାଶ କରିଛନ୍ତି । ଭଞ୍ଜଙ୍କ ରାମାୟଣ ସମ୍ପର୍କୀୟ ଏକ ରଚନା 'ଷୋଳପୋଇ'କୁ ସେ ବହୁ ଶ୍ରମ ସ୍ୱୀକାର କରି

ପ୍ରକାଶ ପୂର୍ବକ ସେ ଉକ୍ତରେ ଏକ ବଡ଼ ଅଭାବ ଦୂର କରି ପାରିଛନ୍ତି । ଉପେନ୍ଦ୍ର ଓ ଭଞ୍ଜ ବଂଶାବଳୀ ସମ୍ପର୍କୀୟ ବହୁତ ପୋଥି ସଂଗ୍ରହ କରି ସେଗୁଡ଼ିକ ମଧ୍ୟରୁ ତିନି ଗୋଟିର ବହୁ ଶ୍ରମ ସ୍ୱୀକାର ପୂର୍ବକ ପ୍ରକାଶ କରାଇଛନ୍ତି । ସେଗୁଡ଼ିକର ନାମ ହେଲା - ଭଞ୍ଜ ବଂଶାନୁଚରିତ, ଭଞ୍ଜ ବଂଶାବଳୀ ଏବଂ ଭଞ୍ଜ ବଂଶ ଓ ଗୁମୁସର ବିଦ୍ରୋହ ।

ଏ ଗୁଡ଼ିକ ଭଞ୍ଜ ଏବଂ ତାଙ୍କ ବଂଶ ସମ୍ପର୍କୀୟ ଗୋଟିଏ ଗୋଟିଏ ମୂଲ୍ୟବାନ ଦଲିଲ । ଘୁମୁସର ଏକ ପ୍ରାଚୀନ ରାଜବଂଶ ସମ୍ପର୍କରେ ବହୁ ନୂତନ ତଥ୍ୟ ଏଗ୍ରନ୍ଥଗୁଡ଼ିକରୁ ଉପଲବ୍ଧ ହୋଇଥାଏ । ମାଗୁଣି ବାବୁଙ୍କ ଦ୍ୱାରା ସଙ୍କଳିତ 'ଭଞ୍ଜ ସାହିତ୍ୟ ପରିକ୍ରମା' ଭଞ୍ଜଙ୍କ ସମ୍ପର୍କରେ ଏକ ଉନ୍ନତ ସ୍ତରର ଆଲୋଚନା ଗ୍ରନ୍ଥ । ଉପେନ୍ଦ୍ରଙ୍କ ପରିଚିତ କରାଇବା ପାଇଁ ଯେଉଁ ଭଞ୍ଜ ସାହିତ୍ୟ ପରିଷଦର ସୃଷ୍ଟି ହୋଇଥିଲା ସେ ତାର ସମ୍ପାଦକ ଥାଇ ସେଥିରେ ବହୁ ଉନ୍ନତ ସାଧିତ କରାଇଥିଲେ । ତମଳକୋଣାର ନାମ ପରିବର୍ତ୍ତନ ହୋଇ ଭଞ୍ଜ ନଗର ରଖାଯିବା ପାଇଁ ଯେଉଁ ଆନ୍ଦୋଳନ କରାଯାଇଥିଲା ସେ ତାର ଜଣେ ମୁଖ୍ୟ ପୁରୋଧା ଥିଲେ । ଭଞ୍ଜଙ୍କର ଲିଖିତ ଅନେକ ଅପ୍ରକାଶିତ କାବ୍ୟ ପୋଥି ସେ ସଂଗ୍ରହ କରି ସେଗୁଡ଼ିକ ପ୍ରକାଶ କରିବାରେ ଯତ୍ନଶୀଳ ହୋଇଛନ୍ତି । ଉପେନ୍ଦ୍ରଙ୍କ ପିତାମହ ରାଜକବି ଧନଞ୍ଜୟ ଭଞ୍ଜଙ୍କ ଏକ ଅପ୍ରକାଶିତ କାବ୍ୟ 'କୃଷ୍ଣଲୀଳା'କୁ ପ୍ରକାଶ କରି ବହୁ ଉପକାର ସାଧନ କରିଛନ୍ତି । ପ୍ରାକ୍ ଭଞ୍ଜ ଯୁଗୀୟ କୃଷ୍ଣ କାବ୍ୟମାନଙ୍କ ମଧ୍ୟରେ କୃଷ୍ଣଲୀଳାର ଏକ ସମ୍ମାନ ଜନକ ସ୍ଥାନ ରହିଅଛି । ଗୀତିକାର ସଙ୍ଗୀତ ସମ୍ରାଟ ଉପେନ୍ଦ୍ରଙ୍କ କାଳଜୟୀ ଗୀତ କବିତାଗୁଡ଼ିକୁ ସଂଗ୍ରହ କରି ସେଗୁଡ଼ିକୁ 'ଉପେନ୍ଦ୍ରଭଞ୍ଜ ଭଜନ ଓ ସଙ୍ଗୀତ' ନାମରେ ପ୍ରକାଶ କରାଇଛନ୍ତି । ଗୀତିକବି ଉପେନ୍ଦ୍ରଙ୍କ ସ୍ୱରୂପ ବିଶ୍ଳେଷଣ ପାଇଁ ଏଥିରେ ବହୁ ଉପାଦାନ ରହିଅଛି । ଚଉତିଶା ସାହିତ୍ୟ ସୃଷ୍ଟି କରିବାରେ ଉପେନ୍ଦ୍ରଙ୍କର ଅସାଧାରଣ ପ୍ରତିଭା ଥିଲା । ଭଞ୍ଜ ଅପ୍ରକାଶିତ ଚଉତିଶା ଗୁଡ଼ିକରୁ କେତେକଙ୍କୁ ନେଇ ସେ 'ଚଉତିଶା' ନାମକ ପୁସ୍ତିକା ପ୍ରକାଶ କରିଛନ୍ତି । ଏହାବ୍ୟତୀତ ଶ୍ରୀ ବିକ୍ରମ ଭଞ୍ଜଙ୍କ କନକଲତା, ରାଜଶ୍ରୀ ଶ୍ରୀକର ଭଞ୍ଜ, ଚକ୍ରବର୍ତ୍ତି ଭଞ୍ଜ, ବଂଶ ଝିଅ ସାହିତ୍ୟକୁ ଘୁମୁସର ରାଜ ବଂଶର ଦାନ, ଭଞ୍ଜ ବଂଶର ଉତ୍ପତ୍ତି, ଉପେନ୍ଦ୍ରଭଞ୍ଜଙ୍କ ଜନ୍ମ ଓ ବଂଶ ପରିଚୟ ପ୍ରଭୃତି ବହୁ ଆଲୋଚନାରେ ଉପେନ୍ଦ୍ର ଓ ତାଙ୍କ ବଂଶ ସମ୍ପର୍କରେ ଉପାଦେୟ ଆଲୋକପାତ କରିପାରିଅଛି । ମାଗୁଣି ବାବୁଙ୍କ ସାଧନାର ମୁଖ୍ୟ ଅଂଶ ଏ ଦିଗରେ ବିନିଯୋଗ ହୋଇଥିବା ପରି ମନେ ହୁଏ । ଏହା ଦ୍ୱାରା ଉପେନ୍ଦ୍ରଙ୍କୁ ଜାଣିବାର ବହୁ ଅଧିକ ସୁଯୋଗ ସେ ସୃଷ୍ଟି କରାଇ ଏ ଦେଶ ଓ ଜାତିର ନମସ୍ୟ ହୋଇପାରିଛନ୍ତି ।

ଉଣେଇଶ ଶହ ଏକ ତ୍ରିଶ ମସିହା ଜାନୁୟାରୀ ମାସରେ ଗାନ୍ଧୀଜୀଙ୍କ ପ୍ରରୋଚନାରେ ମାଗୁଣି ବାବୁ ଦୁଇ ଦଫାରେ ଦୀର୍ଘ ଦଶ ମାସ କାଳ କାରାବରଣ କରିଥିଲେ । ପୃଥିବୀର ବହୁ ବିଖ୍ୟାତ ଗ୍ରନ୍ଥ ବନ୍ଦିଶାଳାରୁ ହିଁ ସୃଷ୍ଟି ହୋଇଛି । ମାଗୁଣି ବାବୁ ଜେଲରେ ଥିବା ସମୟରେ ଅନେକ କବିତା ରଚନା କରିଥିଲେ । ସେ ଗୁଡ଼ିକ ମଧ୍ୟରୁ ବାରଗୋଟି କବିତାକୁ ନେଇ 'କଏଦୀର ଭାବନା' ନାମକ କ୍ଷୁଦ୍ର କବିତା ପୁସ୍ତକଟି ସେ ପ୍ରକାଶ କରିଛନ୍ତି । ତାହା ମୁଖ୍ୟତଃ ଗୋପବନ୍ଧୁଙ୍କ କାରାକବିତା ଅନୁସରଣରେ ରଚିତ ହୋଇଛି । ସେଥିରେ ପ୍ରାରମ୍ଭରେ ଜଣାଣ, ଭଜନ ଓ ପ୍ରାର୍ଥନା ନାମରେ ତିନି ଗୋଟି ଭକ୍ତି ମୂଳକ କବିତା ଅନ୍ତର୍ଭୁକ୍ତ । ସେଗୁଡ଼ିକ କ, ଖ, ଓ ଦ ଅନୁପ୍ରାସ ମୂଳକ ଓ ପ୍ରାଚୀନ ପାରମ୍ପରିକ ଢଙ୍ଗରେ ଲିଖିତ । କବି ତାଙ୍କ 'ନ ହୁଅ ନିରାଶ' ଏବଂ 'ଏଇ ମୋ ଓଡ଼ିଆ ଭାଇ' କବିତା ଦ୍ୱାରେ ଉତ୍କଳୀୟମାନଙ୍କର ପୂର୍ବ ଗୌରବକୁ ସ୍ମରଣ କରି ସେମାନଙ୍କ ମନରେ ଦେଶାତ୍ମବୋଧ ଓ ସ୍ୱାଭିମାନର ବୀଜ ବପନ କରିବାକୁ ପ୍ରଚେଷ୍ଟା କରିଛନ୍ତି । କାଳର କରାଳ କବଳରେ ଧ୍ୱସ୍ତବିଧ୍ୱସ୍ତ ସମୃଦ୍ଧ ଉତ୍କଳର ପୂର୍ବ ଗୌରବର ସ୍ମୃତି ସ୍ମରଣ କରି କବି କହିଛନ୍ତି ।

"ଗଙ୍ଗାଠାରୁ ଗୋଦାବରୀ ଯାଏଁ ଯାର
ଜୟ ଧ୍ୱଜା ଉଡ଼ୁଥିଲା ଫରଫର ।
ଉଡ଼ୁ ନାହିଁ ଆଜ ସେ ଜୟ ଧ୍ୱଜା
ବାଜୁ ନାହିଁ ଆଜ ରଣ ଭେରୀ ବାଜା ।

× × ×

କେବେ ହେବ ଭାଗ୍ୟ ଉଦୟ ତାହାର
କେବେ ଯିବ ଦୁଃଖ ଓଡ଼ିଆ ପୁଅର ।

ଉତ୍କଳୀୟମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଲମ୍ଫ ପ୍ରଦାନ କରିବାକୁ ପ୍ରେରଣା ପ୍ରଦାନ କରି କବି କହିଛନ୍ତି ।

"ଏଇ ମୋ ଓଡ଼ିଆ ଭାଇ
ଯୁଦ୍ଧରେ ନାଚୁଛି ଏ ପାଶ ସେ ପାଖ ।
କି ଆନନ୍ଦେ ମତ୍ତ ହୋଇ
ବାଜିଗଲେ କାହିଁ ଯୁଦ୍ଧବାଦ୍ୟ ବାଜା ।

ଦେଖିଲେ ଦୂରରୁ ନୈଶ ଓଡ଼୍ର ଧ୍ୱଜା
ଧାଏଁ କେତେ ବେଗେ ଆଖି ପଲକରେ
ଯୁଦ୍ଧରେ ପଶିବା ପାଇଁ —୧

ଦେଇ ଆଜି ପ୍ରାଣ ଜନ୍ମଭୂମୀ ପାଇଁ
ଅବା ଜୟୀ ହେଲେ ଭୋଗିବ ଯେ ମହୀ ।
ବଳିର ସଂହାର କଥା ଗାଇଲେ ତ
ଭାଟେ କାଟେ ସାରା ମହୀ — ୨ ।

ଅନୁରୂପ ଭାବେ କବି ଭଗବତୀଙ୍କ ଉଦ୍ଦେଶ୍ୟରେ 'ସ୍ୱାଧୀନତା ପଥେ' ଓ 'ଭାରତର ଜାଗ୍ରତ ଆତ୍ମା' କବିତା ଦ୍ୱୟରେ ଭାରତର ପୂର୍ବ ଗୌରବ ସ୍ମରଣ ପୂର୍ବକ କହୁଛନ୍ତି ।

"କେଶ ଥିଲା ଏହି ଭାରତ ପୂର୍ବେତ
ଖରଲେ ହୃଦୟ ମାଡ଼ି ଉଠେ ଗର୍ବ
କିନ୍ତୁ ଆଜି କାହିଁ ନ ଦେଖୁଛି ତାହା
କର୍ପସ୍ଥାନ ଫଳ ଫଳିଗଲା ଆହା ! "

ଦେଶ ଓ ଜାତିର ସନ୍ମାନ ପାଇଁ ଭାରତୀୟମାନେ ଦୃଢ଼ ଆତ୍ମ ବଳ ସହ ସଂଗ୍ରାମ ପଥରେ ଅଗ୍ରସର ହୋଇ ବିଜୟ ଶ୍ରୀ ମଣ୍ଡିତ ହେବାକୁ କବି ଉଦ୍‌ବୋଧନ ଦେଇଛନ୍ତି ।

ରକ୍ତନଦୀ ଯାଉ ଭାରତରେ ବହି
ମାଳମାଳ ମୁଣ୍ଡ ଗଡ଼ୁ ସାରା ମହୀ ।

ତଥାପି ନ ଦେବୁ ପଛଘୁଞ୍ଚା ଆମ୍ଭେ
ଲଭିବୁ ସ୍ୱରାଜ୍ୟ ସାଧନେ ସଦମ୍ଭେ ।

ମାତାଙ୍କର ମର୍ମେ ଭାରତ ସନ୍ତାନ
ହେଲେ କହେ ସର୍ବେ ବନ୍ଦେନ ବଦ୍ଧାନ ।

ବୀର ରକ୍ତ ଉଠୁ ନାହିଁ କହେ ତାତ
ଅନାହାରେ ସବୁ ଲଭିଛ କି ଶାନ୍ତି ?

× × ×

ଦଅ ସର୍ବେ ବଳି ଜନ୍ମଭୂମି ପାଇଁ
ମାତୃଭୂମି ଜୟ ଆନନ୍ଦରେ ଗାଇ ।

କବିଙ୍କର ଆଶା ଓ ଆହ୍ୱାନ ପରେ ସତ୍ୟରେ ପରିଣତ ହୋଇଛି । କବିଙ୍କ ଆଶା ଥିଲା ।

“ହୋଇବାରେ ସର୍ବେ ନିଶ୍ଚିନ୍ତ ସ୍ୱାଧୀନ
ଘୁଞ୍ଚିବ ଏ ଦେଶୁଁ ବିଦେଶୀ ଶାସନ ।।

ଫିଟିବ ବନ୍ଧନ ହୋଇବା ମୁକତ
ଜାଗ ଭାରତ ସନ୍ତାନ
ଜାଗରେ ଅଳି ଭାରତ ଜାତି
ହିନ୍ଦୁ ଖ୍ରୀଷ୍ଟ ମୁସଲମାନ ।

କବିଙ୍କ ଉପରେ ଉତ୍କଳମଣିଙ୍କ ପ୍ରଭାବ ଓ ତାଙ୍କ ସାହିତ୍ୟର ପ୍ରଭାବ ପଡ଼ିଥିବା କଥା ପୂର୍ବରୁ କୁହାଯାଇଛି ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମ କଥା' । ଅବଲମ୍ବନରେ କବି ତାଙ୍କ 'ମୋର ବ୍ୟକ୍ତିଗତ ସତ୍ୟାଗ୍ରହ' କବିତାଟି ରଚନା କରିଛନ୍ତି । ଭାରତର ମୁକ୍ତି ଯୁଦ୍ଧରେ କବିଙ୍କର ଯୋଗଦାନ ସେଥିପାଇଁ ଜନଗଣ ତରଫରୁ ତାଙ୍କୁ ସମ୍ବର୍ଦ୍ଧନା ଦିଆଯିବା, ଇଂରେଜଙ୍କ ବିରୁଦ୍ଧରେ ଭାଷଣ ଦେବାରୁ ତାଙ୍କୁ ପୁଲିସ ଗିରଫ କରିବା, ରସୁଲକୋଣ୍ଡାରେ ବିଚାର ହୋଇ ଛଅ ମାସ ଜେଲ ଦଣ୍ଡ ଆଦେଶ, ପୁଣି ଜେଲରୁ ଖଲାସ ହୋଇ ଜନ ସମାଜ ସହ ମିଶିବା ପ୍ରଭୃତି ବିଷୟବସ୍ତୁ ଖୁବ୍ ସରଳ ଭାଷାରେ ବର୍ଣ୍ଣିତ । ଶେଷରେ କବି ଆଶାବାଦୀ ହୋଇ ଦେଶବାସୀଙ୍କୁ କହି ଅଛନ୍ତି ।

'ଡାକ ଆରେ ଭାଇ
ଜଗନ୍ନାଥଙ୍କୁ
ଘୁଞ୍ଚାଇବେ ଆମ ଦୁଃଖ
ହୋଇବା ସ୍ୱାଧୀନ
ଯିବ ପରାଧୀନ
ଦେଶେ ବିରାଜିବ ସୁଖ' ।

କବିଙ୍କୁ ପୁଲିସ ଗିରଫ କରି ଆଣିବା ସମୟରେ ସେମାନଙ୍କୁ ଦେଖି କବିଙ୍କର ମନେ ହେଲା ।

“ନେଉଛନ୍ତି ଅବା ଯମ ଦୂତମାନେ
ଥିଲା ଏହା ମନରେ ।”

ଏହି ପଂକ୍ତିଟି କବିତାର ଉତ୍କର୍ଷ ସମ୍ପାଦନରେ ସହାୟତା କଲା ପରି ମନେ ହେଉ ନାହିଁ ।

'ବାପ୍ପା ପଦ ନୋଇଁବୁ ଭବେ' କବିତାଟି ଏକ ପ୍ରକାର ମନ ଶିକ୍ଷା ମୂଳକ କବିତା। ସଂସାରର ଅନିତ୍ୟତା ଓ ସେଥିରୁ ପରିତ୍ରାଣ ପାଇଁ ଜଗନ୍ନାଥଙ୍କ ଶରଣ ହିଁ ଏକ ମାତ୍ର କାମ୍ୟ ବୋଲି କବିଙ୍କର ମତ ।

ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରତି କବିଙ୍କର ଅସୀମ ମମତା ଓ ଭକ୍ତିବୋଧ ରହିଥିଲା । ଗୋପବନ୍ଧୁଙ୍କ ଆଦର୍ଶରେ ସେ ଅନୁପ୍ରାଣିତ ହୋଇଥିଲେ । ଦେଶମାତୃ ସ୍ୱାଧୀନତା ସଂଗ୍ରାମରେ ସ୍ୱେଚ୍ଛାସେବୀ କାର୍ଯ୍ୟ ଗୋପବନ୍ଧୁଙ୍କ ପ୍ରଭାବରେ ହୋଇଥିବାର ମନେ ହୁଏ । ମାଧ୍ୱଣି ବାବୁଙ୍କ ଲେଖାରେ ମଧ୍ୟ ଗୋପବନ୍ଧୁଙ୍କ ଲେଖାର ପ୍ରଭାବ ସ୍ପଷ୍ଟ । ଉତ୍କଳର ଘଡ଼ିସନ୍ଧି ସମୟରେ ଉତ୍କଳମଣିଙ୍କ ତିରୋଧାନ କବିଙ୍କୁ କାମ୍ୟ ଓ ବିବ୍ରତ କରି ପକାଇଛି । 'ଗୋପବନ୍ଧୁ ସ୍ମୃତି' କବିତାରେ ଏ ସମ୍ପର୍କରେ ସେ କହିଛନ୍ତି ।

"ଜାଣି ଯାଇ ସ୍ୱର୍ଗେ ରହି
କର କି ସ୍ମୃତି ଉତ୍କଳ ଭୂଇଁ
ହେ ଗୋପବନ୍ଧୁ,
କାଙ୍ଗାଳ ଓଡ଼ିଆ ପାଇଁ । × ×

ତରି କାଏ ନେବ ବାହି
ତାରବ ସଙ୍କଟୁ ଉତ୍କଳ ଭୂଇଁ.
ହେ ଗୋପବନ୍ଧୁ
ତୁମେ ଗଲ ଅନ୍ତର୍ଦ୍ଧାନ ହୋଇ ।

କରନ୍ତି ଓଡ଼ିଶାବାସୀ
ନୀର ଢାଳୁଛନ୍ତି ନୀରବେ ବସି
ହେ ଗୋପବନ୍ଧୁ
ଠ ଦେଖିଲ ଥରେ ଆସି ।"

ତାଙ୍କର ଅନ୍ୟ ଏକ ଚଉତିଶା ହେଲା 'କୃଷକ ଗୀତ' । ଯୁଗେ ଯୁଗେ ଧନୀ ଜମିଦାର ଶ୍ରେଣୀ କୃଷକଙ୍କୁ ବିଭିନ୍ନ ଉପାୟରେ ଶୋଷଣ କରିଥାନ୍ତି । ସରଳ କୃଷକ ମୁଣ୍ଡପାତି ସବୁ ସହି ନେଇଥାଏ । ଏହି ଉଦ୍‌ବୋଧନ ମୂଳକ କବିତାରେ କବି କୃଷକଙ୍କୁ ତାର ଅଧିକାର ବିଷୟରେ ସଚେତନ କରାଇ ଜମିଦାର କବଳରୁ ମୁକ୍ତି ପାଇବା ପାଇଁ ସାହସର ସହ ତା ବିରୁଦ୍ଧରେ ସଂଗ୍ରାମ କରିବାକୁ ପ୍ରେରଣା ପ୍ରଦାନ କରିଛନ୍ତି ।

ଏ ସବୁ ବ୍ୟତୀତ ମାଗୁଣି ବାବୁଙ୍କ ଚରିତ୍ରର ବହୁ ଆଦର୍ଶଗତ ଦିଗ ରହିଛି । ସେଗୁଡ଼ିକ ଏ ଯୁଗ ପାଇଁ ଅତ୍ୟନ୍ତ ମୂଲ୍ୟବାନ । ସେ ହେଉଛନ୍ତି ଉତ୍କଳଭୂମିର ସୁଯୋଗ୍ୟ ଦାୟାଦ । ଏହି ବହୁମୁଖୀ ପ୍ରତିଭାଧର ଦୀର୍ଘଜୀବୀ ହୋଇ ଆମ୍ଭମାନଙ୍କୁ ଉଦ୍‌ବୁଦ୍ଧ କରନ୍ତୁ । ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ଆମେ ନିଜେ ସମ୍ବର୍ଦ୍ଧିତ ହେବା । ଆଜି ଆସନ୍ତୁ ସେହି ଉଦାରଚେତା, କର୍ମଯୋଗୀ, ନିଷ୍ଠାପର ସମାଜସେବୀ, ନିରବଚ୍ଛିନ୍ନ ଜୀବନ ସାଧକ, ଅକୃତ୍ରିମ ଦେଶଭକ୍ତ, ଅସାମାନ୍ୟ ପ୍ରତିଭାଧରଙ୍କ ଦୀର୍ଘ ଜୀବନ କାମନା କରିବା ଆମ ପକ୍ଷରେ ସ୍ୱାଭାବିକ ।

ଉତ୍କଳ ଭୂମିର ସେହି ଯୋଗ୍ୟ ଦାୟାଦଙ୍କ ଦୀର୍ଘ ଜୀବନ କାମନା କରି ଆମର ଭକ୍ତି ନୈବେଦ୍ୟ ଅର୍ପଣ କରିବା ।



ଶଡ଼ିର
ପ୍ରାଣନାଥ କଲେଜ
ଖୋର୍ଦ୍ଧା

# କିମ୍ବଦନ୍ତୀ ସଂଗ୍ରାହକ ମାଗୁଣି ଦାଶ

ଅଧ୍ୟାପକ କମ୍ବୁପାଣି ସାମନ୍ତ

ସୁସଂଗ୍ରାହକ ମାଗୁଣି ଦାଶଙ୍କର 'କିମ୍ବଦନ୍ତୀରେ ଭଞ୍ଜ' ଏକ ଗୁଣମନ୍ତ ସଂକଳନ । ଜୀବନର ଉତ୍ତରାର୍ଦ୍ଧରେ ଶାରୀରିକ କ୍ଲେଶ ପ୍ରତି ଭ୍ରୂକ୍ଷେପ ନ କରି ଗୁମୁସରର ଗ୍ରାମାଞ୍ଚଳରେ ସେ ଅନୁସନ୍ଧାନ କରିଛନ୍ତି । ସଂଗ୍ରହ କରିଛନ୍ତି ଗୁମୁସରର ଇତିହାସ ଏବଂ ପ୍ରାଚୀନ ସାହିତ୍ୟ ବିଷୟକ ବହୁ ଅନାଲୋଚିତ ଉପାଦାନ । ସଂଗୃହୀତ ଅନେକ ତାଳପତ୍ର ପୋଥିକୁ ସୁସଂପାଦିତ କରି ନିଜସ୍ୱ ଉଦ୍ୟମରେ ପ୍ରକାଶ କରିଛନ୍ତି ମଧ୍ୟ ଗୋପାଳଚନ୍ଦ୍ର ପ୍ରହରାଜ, ଶ୍ୟାମସୁନ୍ଦର ରାଜଗୁରୁ, ତାରିଣୀ ଚରଣ ରଥ, ଆର୍ତ୍ତବଲ୍ଲଭ ମହାନ୍ତି, ବୈକୁଣ୍ଠଚରଣ ପଟ୍ଟନାୟକ, ଡକ୍ଟର କୃତ୍ତିବାସ ଦାଶ, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପରମାନନ୍ଦ ଆଚାର୍ଯ୍ୟ, ସତ୍ୟନାରାୟଣ ରାଜଗୁରୁ, କେଦାରନାଥ ମହାପାତ୍ର, ଚକ୍ରଧର ମହାପାତ୍ର, ବିନାୟକ ମିଶ୍ର, ନୀଳମଣି ମିଶ୍ର, ସୂର୍ଯ୍ୟନାରାୟଣ ଦାଶ, ସଚ୍ଚିଦାନନ୍ଦ ମିଶ୍ର, ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ, ଡକ୍ଟର ପ୍ରସନ୍ନକୁମାର ମିଶ୍ର, ଏବଂ ଅନ୍ୟ ଅନେକ ବିଦ୍ୱାନ ଓଡ଼ିଶାର ସାହିତ୍ୟ—ଇତିହାସ—କ୍ଷେତ୍ରରେ ସଂଗ୍ରହ—ସଂପାଦନ—ଗବେଷଣାର ଯେଉଁ ବଳିଷ୍ଠ ପରଂପରା ସୃଷ୍ଟି କରିଛନ୍ତି, ଗଭୀର ନିଷ୍ଠା ଓ କଠୋର ଅଧ୍ୟବସାୟ ବଳରେ ଶ୍ରୀଯୁକ୍ତ ମାଗୁଣି ଦାଶ ନିଜକୁ ସେହି ସ୍ରୋତରେ ସାମିଲ୍ କରି ପାରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭଞ୍ଜ ବଂଶାନୁଚରିତ, ଭଞ୍ଜ ବଂଶ ଓ ଗୁମୁସର ବିଦ୍ରୋହ, ଭଞ୍ଜ ବଂଶାବଳୀ, ରସିକାମୃତଚନ୍ଦ୍ରା, ଶ୍ରୀକୃଷ୍ଣ କ୍ରୀଡ଼ା, ଶ୍ରୀ ରଘୁନାଥ ଜଣାଣ, ଷୋଳପୋଇ, ଚୌପଦୀ ଭୂଷଣ, ଗୁମୁସର ଇତିହାସ ଇତ୍ୟାଦି ଗ୍ରନ୍ଥ ପ୍ରକାଶ କରି ଶ୍ରୀଯୁକ୍ତ ମାଗୁଣି ଦାଶ ତାଳପତ୍ର ପୋଥି ସଂଗ୍ରହ ଓ ସଂପାଦନାର ଏକ ନିଷ୍ଠା ତଥା ଏକକ ଉଦ୍ୟମର ସଫଳ ସ୍ୱାକ୍ଷର ଲିପିବଦ୍ଧ କରିଛନ୍ତି । ସେହିଭଳି ବୀର ଚକ୍ର ବିଶୋଇ, ଫୁଲବାଣୀର କନ୍ଧ ସଂସ୍କୃତି, ଗଞ୍ଜାମ ସ୍ୱାଧୀନତା ସଂଗ୍ରାମୀ ଜୀବନୀ, ଆମ ମନ୍ଦିର ଆମ ଦେବତା ଇତ୍ୟାଦି ପ୍ରବନ୍ଧ/ଗ୍ରନ୍ଥମାନଙ୍କରେ ତାଙ୍କର ସଂଗ୍ରହ—ସମୀକରଣ—ସଂପାଦନାଗତ ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି । ଆନୁଷ୍ଠାନିକ ପ୍ରୋତ୍ସାହନା ନୁହେଁ, ବ୍ୟକ୍ତିଗତ ଅନୁପ୍ରେରଣାରେ ହିଁ ସେ ନିରଳସ ଭାବେ ପୋଥି ସଂଗ୍ରହ ଓ ସଂପାଦନା ଭଳି ପୀଡ଼ାପ୍ରଦ ପ୍ରୀତିରେ ନିଜକୁ ନିୟୋଜିତ ରଖିଛନ୍ତି ।

ସମୁଦାୟ ନ'ଗୋଟି ପ୍ରବନ୍ଧକୁ ନେଇ ତାଙ୍କର କ୍ଷୁଦ୍ର ସଂକଳନ 'କିମ୍ବଦନ୍ତୀରେ ଭଞ୍ଜ'. ଗ୍ରନ୍ଥଟିର ଅନ୍ୟତମ ଆକର୍ଷଣ ହେଉଛି ଏହାର ମୁଖଶାଳା, ଏଥିରେ କିମ୍ବଦନ୍ତୀର ଉପାଦେୟତା ଓ ସଂଗ୍ରହର ଆବଶ୍ୟକତା ସଂପର୍କରେ ଏକ ପାଣ୍ଡିତ୍ୟ ପୂର୍ଣ୍ଣ ଭୂମିକା ସଂଯୋଜିତ, ଇତିହାସର ସଂରଚନା ଓ ପୁନଗଠନରେ କିମ୍ବଦନ୍ତୀର ଭୂମିକା ଏବେ ଆଉ ଅବହେଳାର ବିଷୟ ହୋଇ ରହିନାହିଁ । କିମ୍ବଦନ୍ତୀକୁ ଆଧାର କରି ଐତିହାସିକ ସତ୍ୟର ନିରୂପଣ ଅଥବା ପରିବର୍ତ୍ତନ—ପରିବର୍ଦ୍ଧନ, ବିଶେଷତଃ ଓଡ଼ିଶା ଇତିହାସର ପୁନର୍ଗଠନରେ ଏହାର ଏକ ବିଶିଷ୍ଟ ଭୂମିକା ବହିଥିବା ଲକ୍ଷ୍ୟ କରାଯାଇଥାଏ । କିମ୍ବଦନ୍ତୀର ସତର୍କ ସଂଗ୍ରହଣ ଓ ଭାବ ପ୍ରବଣତା ବର୍ଜିତ ସତ୍ୟାଶ୍ରିତ ପରିଶୀଳନ, ନ ହେଲେ କି ଭଳି ବିପୁଳ ବିଭ୍ରାନ୍ତିରେ ଇତିହାସ ଅନ୍ୱେଷଣକାରୀ ହୁଏ, ତାର ସାକ୍ଷ୍ୟ ମଧ୍ୟ ଆମ ପାଖରେ ଅପ୍ରତୁଳ ନୁହେଁ । ଆନନ୍ଦର ବିଷୟ ଯେ, ଶ୍ରୀଯୁକ୍ତ ମାଗୁଣି ଦାସ କୌଣସି ନିରୂପିତ ଉଦ୍ଦେଶ୍ୟ ଦୃଷ୍ଟିରୁ ନୁହେଁ, ବରଂ ଲୋକ ମୁଖରେ ପ୍ରଚଳିତ ବିଶୁଦ୍ଧ କିମ୍ବଦନ୍ତୀମାନଙ୍କୁ ସଂଗ୍ରହ କରିଛନ୍ତି । ଏଇ ସଂଗ୍ରହ—ନିରପେକ୍ଷତା ହିଁ ତାଙ୍କର ବିଶେଷତ୍ୱ ।

ଘୁମୁସର ହେଉଛି ଜନଶ୍ରୁତିର ଜନ୍ମାଘର, ଦୀର୍ଘ ଏକ ହଜାର ବର୍ଷ ଧରି ଭଞ୍ଜ ବଂଶ ଏଠାରେ ଶାସନ କରିଥିଲେ । ତତ୍ପୂର୍ବରୁ ବି କଙ୍ଗୋଦ ମଣ୍ଡଳ ଅନ୍ତର୍ଗତ ଏଇ ଭୂଖଣ୍ଡରେ ଧାର୍ମିକ ସଭ୍ୟତାର ଭିନ୍ନ ବିଭିନ୍ନ ସୃଷ୍ଟି ଥିବା ସଂପର୍କରେ ଏବେବି ଗବେଷକଙ୍କୁ ଅପେକ୍ଷା କରିଥିବା ଅନେକ ଐତିହାସିକ ସଂକେତ ବିଳୟ ଆଡ଼କୁ କ୍ଷିପ୍ର ପଦପାତ କରୁଛି । କଳିଙ୍ଗ, କୋଶଳ ଓ ଉତ୍କଳର ତ୍ରି ସୀମାନ୍ତରେ ଅବସ୍ଥିତ ପ୍ରାକୃତିକ ସୌନ୍ଦର୍ଯ୍ୟଭରା । ଘୁମୁସର ସଂପ୍ରତି ମଳିତ ନଗ—ଦନ୍ତ—ପଲିତ ଚର୍ମ ଅଥବ ଭଳି ଅତୀତର ଉଦ୍ଧାସ ଯୌବନର ହୋମନ୍ଥନ କରୁଛି । ଭଞ୍ଜ ବଂଶର ସୁଦୀର୍ଘ ସୁଶାସନ, ବୀରଧୂପ ଓ କାବ୍ୟ କୀର୍ତ୍ତିର ଖ୍ୟାତି ସାଙ୍ଗକୁ ବେଳେ ବେଳେ ଅଂନ୍ତଃପୁର ଷଡ଼ଯନ୍ତ୍ର ଏବଂ ବ୍ରିଟିଶ୍ ବିରୋଧୀ ବିଦ୍ରୋହ ଯେଉଁକି ଐତିହାସିକ ଗୁରୁତ୍ୱ ହାସଲ କରିଛି, ତତୋଧିକ ଜନଶ୍ରୁତି ଜନଚିତ୍ତରେ ପୁଲକ ସଞ୍ଚାର କରୁଛି । ଦେବଦେବୀ କୈନ୍ଦ୍ରିକ ଅଷ୍ଟମାଗ୍ନି 'ସ୍ୱପ୍ନବୃତ୍ତ' ଏବଂ ଭଞ୍ଜ ରାଜା କହିଲେ...'ଭଞ୍ଜ ରାଜାଙ୍କ ସମ୍ବନ୍ଧରେ...' ପ୍ରଭୃତି ସ୍ତବରେ ବହୁ ଇତିହାସ ସଂପର୍କିତ ତଥା ମନୋରଞ୍ଜନ ଧର୍ମୀ 'କିମ୍ବଦନ୍ତୀ' ମାନ ଏ ଅଞ୍ଚଳରେ ଜନ ମୁଖରେ ପ୍ରଚଳିତ । ସାଂପ୍ରତିକ ସମୟର ସାମାଜିକ ବ୍ୟବସ୍ଥାର ବିଘଟନ ହେତୁ ଲୋକେ ଆଉ ଜନଶ୍ରୁତିକୁ ଶୁଣି ସାଇତି ରଖିବା ଅବସ୍ଥାରେ ନାହାନ୍ତି । ତଦାଶ୍ରୟୀମାନଙ୍କ ମୃତ୍ୟୁ ସହିତ

କିମ୍ବଦନ୍ତୀଗୁଡ଼ିକ ଜମ ବର୍ଣ୍ଣିସ୍ୟମାନ, ଡକ୍ଟର ପ୍ରସନ୍ନକୁମାର ମିଶ୍ର ତାଙ୍କର ସୁସଂଗୃହୀତ 'ଓଡ଼ିଶାର କିମ୍ବଦନ୍ତୀ' ଗ୍ରନ୍ଥରେ ଘୁମୁସର କେତେକ ଜନ ଶ୍ରୁତିକୁ ସଂକଳିତ କରି ଏକ ମହାନ କାର୍ଯ୍ୟ ସଂପାଦନ କରିଛନ୍ତି । ଏବେ ଶ୍ରୀଯୁକ୍ତ ମାଗୁଣି ଦାସ 'ଭଞ୍ଜ' ସଂପର୍କିତ କେତେକ କିମ୍ବଦନ୍ତୀକୁ ପ୍ରକାଶ କରି ଏ ଦିଗରେ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ କରିଛନ୍ତି ।

ମାଗୁଣି ଦାଶଙ୍କ ସଂକଳିତ ପ୍ରଥମ ପ୍ରବନ୍ଧ 'ଗୋପାଳ ଭଞ୍ଜଙ୍କ ବିରଚିତ ପଞ୍ଚଶାୟକ'କୁ ଜନଶ୍ରୁତି ପର୍ଯ୍ୟାୟଭୁକ୍ତ କରାଯିବା ଅନୁଚିତ, କେବଳ, 'ପଞ୍ଚଶାୟକ' ଗ୍ରନ୍ଥଟି ଉପେନ୍ଦ୍ର ଭଞ୍ଜଙ୍କ ନାମରେ ପ୍ରକାଶ କରାଯାଇ ଯେଉଁ ବିଭ୍ରାନ୍ତି ସୃଷ୍ଟି କରାଯାଇଛି, ଶ୍ରୀଯୁକ୍ତ ମାଗୁଣି ଦାଶ ତାର ତୀବ୍ର ସମାଲୋଚନା ଓ ତଥ୍ୟଭିତ୍ତିକ ଦୃଢ଼ ଖଣ୍ଡନ କରିଛନ୍ତି । ଏହା ଜନଶ୍ରୁତି ମୂଳକ ନ ହେଲେ ହେଁ ଏହାର ଐତିହାସିକ ବିଚାରଧାରା ପ୍ରଶଂସନୀୟ । 'ଭକ୍ତରଞ୍ଜିତ ଭଞ୍ଜ ବଂଶ' ଉପେନ୍ଦ୍ର ଭଞ୍ଜଙ୍କ ବୈବାହିକ ଜୀବନ" ପ୍ରବନ୍ଧ ଦ୍ୱୟ ମୁଖ୍ୟତଃ ଭଞ୍ଜ ବଂଶାବଳୀ ଓ ଚିଂତାମଣି ମହାନ୍ତିଙ୍କ ଘୁମୁସର କାବ୍ୟକୁ ଆଧାର କରି ଲେଖାଯାଇଥିଲେ ମଧ୍ୟ କିମ୍ବଦନ୍ତୀର ସହାୟତା ନିଆଯାଇଛି । ଉପେନ୍ଦ୍ରଭଞ୍ଜଙ୍କ ରାମତାରକ ମନ୍ତ୍ର ସିଦ୍ଧିର ସଂପର୍କରେ ତାଂତ୍ରିକ ପରଂପରାନୁସାରେ ଭୈରବୀ ସାଧନା କଥାଟିଏ ଜନଶ୍ରୁତି ରୂପ ନେଇ ଘୁମୁସରରେ ବହୁଳ ପ୍ରଚଳିତ, ତାଙ୍କର ମନ୍ତ୍ର ସିଦ୍ଧିର ସ୍ଥାନ ସଂପର୍କରେ ମଧ୍ୟ ଏକାଧିକ ଜନଶ୍ରୁତି ରହିଛି । ଶ୍ରୀଯୁକ୍ତ ମାଗୁଣି ବାବୁ ଏ ସମସ୍ତର ଆଧାରରେ ବହୁ ପ୍ରଚଳିତ କିମ୍ବଦନ୍ତୀମାନଙ୍କୁ ଏକାଠି କରି 'ଉପେନ୍ଦ୍ରଭଞ୍ଜଙ୍କ ରାମତାରକ ମନ୍ତ୍ର ସିଦ୍ଧି' ରଚନା କରିଛନ୍ତି । ଭଞ୍ଜଙ୍କ ବିବାହ ଓ ଦାମ୍ପତ୍ୟ ଜୀବନ ଯେଉଁ ଭଳି ବହୁ କିମ୍ବଦନ୍ତୀକୁ ସୃଷ୍ଟି କରିଛି । ମାଗୁଣି ଦାଶଙ୍କ ପ୍ରୋକ୍ତ ପ୍ରବନ୍ଧମାନଙ୍କରେ ଜନ ପ୍ରିୟ ଏବଂ ମନୋରଞ୍ଜନ ଧର୍ମୀ କିମ୍ବଦନ୍ତୀ ସହିତ ଭଞ୍ଜ କାବ୍ୟ, ଭଞ୍ଜବଂଶାବଳୀ ଓ ଘୁମୁସର କାବ୍ୟର ବିଶେଷ ସହାୟତା ନେଇଥିବା ପରିଲକ୍ଷିତ, କିନ୍ତୁ କିମ୍ବଦନ୍ତୀଗୁଡ଼ିକୁ ଅକ୍ଷତ ଉପସ୍ଥାପନ କରିବା ଅପେକ୍ଷା ମୌଳିକତ୍ୟ—ଇତିହାସର ଅବଲମ୍ବନରେ କିମ୍ବଦନ୍ତୀର ପୁନର୍ଗଠନ—ପ୍ରୟାସ ଏହି କେତୋଟି ପ୍ରବନ୍ଧରେ ବେଶ ଦେଖାଇ ପଡ଼ୁଛି ।

ସଂକଳନର ଶେଷ ଚାରିଗୋଟି ପ୍ରବନ୍ଧ, ଯଥା—ବାଦୁଡ଼ି ଅଇଲେ ଭଞ୍ଜା, କଣ୍ଠ ଦେଲେ ମୁଣ୍ଡ ହାଣି, ଭଞ୍ଜ ପଳାଇଗଲେ କେଉଁଠି ମାଳକୁ ଏବଂ ଭଞ୍ଜ ରାଜାଙ୍କ କାଠ ଚୂପୁଡ଼ା—ଶ୍ରୀଯୁକ୍ତ ମାଗୁଣି ଦାଶଙ୍କୁ କିମ୍ବଦନ୍ତୀର ସଫଳ ସଂଗ୍ରାହକ ଭାବେ ଯଶସ୍ୱୀ କରି ରଖିବ, ଏଗୁଡ଼ିକୁ ବିଶୁଦ୍ଧ ଭାବରେ ସଂଗ୍ରହ ଓ ନିଜସ୍ୱ ଉଦ୍ୟମରେ ପ୍ରକାଶ କରିବା ହେତୁ ଓଡ଼ିଆ ଲୋକ ସାହିତ୍ୟ ତାଙ୍କ ପ୍ରସାଦରେ ଏକ

ସ୍ୱତଂସ୍ଥାନ ଅର୍ପଣ କରିଛୁ । ସଂଗୃହୀତ କିମ୍ବଦଂତୀରୁ କେତେକର ଐତିହାସିକ ଅନୁଶୀଳନ କରି ସମସ୍ତ ନିର୍ଦ୍ଦେଶ ପୂର୍ବକ ତଥ୍ୟ ଭିତ୍ତିକ କରାଯାଇଛୁ । ଘୁମୁସରର ଇତିହାସ କେବେ ପୁନର୍ଗଠିତ ହେଲେ ମାଗୁଣି ଦାଶଙ୍କ ଏ ତଥ୍ୟ ଏକ ନିଶ୍ଚିତ ଅବଲମ୍ବନ ହେବ, ସନ୍ଦେହ ନାହିଁ ।

କିମ୍ବଦନ୍ତୀ ସଂଗ୍ରହ ଭଳି ଏକ ଦୁରୁହକାର୍ଯ୍ୟକୁ ମାଗୁଣି ଦାଶ ହାତକୁ ନେଇ ଯେଉଁ ଭଳି ସିଦ୍ଧିର ସୋପାନ ଅତିକ୍ରମ କରିଛନ୍ତି । ତାହା ପରବର୍ତ୍ତୀ ପିଢ଼ି ପାଇଁ ଏକ ନିଶ୍ଚିତ ପ୍ରେରଣାର ବସ୍ତୁ । ତାଂକ ସଂଗୃହୀତ ଅନ୍ୟାନ୍ୟ କିମ୍ବଦଂତୀମାନ ସଂପାଦିତ ନ ହୋଇ ଯଥାନୁରୂପ ସଂକଳିତ ହେଲେ ଓଡ଼ିଆ ସାହିତ୍ୟର ଅଶେଷ ଉପକାର ସାଧିତ ହୋଇ ପାରିବ ।

ବରିଷ୍ଠ ଅଧ୍ୟାପକ
ଓଡ଼ିଆ ବିଭାଗ
ଭଞ୍ଜନଗର କଲେଜ

କୃଷିବିଜ୍ଞାନୀ ରାଜେନ୍ଦ୍ର ପ୍ରସାଦ ଦାସ ଶ୍ରୀ ଡାକ୍ତର ଶ୍ରୀନିବାସ ଦାଶ ଇଞ୍ଜିନିୟର ମନ୍ମଥନାଥ ଅଛି, ସାହିତ୍ୟ ସାଧକ ପଣ୍ଡିତ ଶ୍ରୀଧର ଶତପଥି, ଚଳଚିତ୍ର ଅଭିନେତା ରମାକାନ୍ତ ମିଶ୍ର, ରାଧା ପଣ୍ଡା ପ୍ରଭୃତିଙ୍କ ନାମ ଓ କାମ ସ୍ୱୀକାର୍ଯ୍ୟ। ପୁଣି ଏ ଅବସରରେ ଉପର୍ଯ୍ୟୁକ୍ତ ବ୍ୟକ୍ତିତ୍ୱଙ୍କ ମଧ୍ୟରେ ସାହିତ୍ୟ ସେବକ ଶ୍ରୀ ମାଗୁଣି ଦାଶ (ଜଗନ୍ନାଥ ପ୍ରସାଦ) ଅବଶ୍ୟ ଏକ ସୁନ୍ଦର ଉଦାହରଣ, ଯିଏ ସାଧାରଣ ମନେ ହୁଅନ୍ତି କିନ୍ତୁ ଗୁରୁତ୍ୱପୂର୍ଣ୍ଣ ଜାତୀୟ କାର୍ଯ୍ୟ କରି ଅନ୍ୟଙ୍କୁ ଆକର୍ଷିତ କରନ୍ତି।

ସାଂଗଠନିକ, ସଂଗ୍ରାହକ, ସଂପାଦକ, ଗବେଷକ, ସାହିତ୍ୟିକ ଓ ସ୍ୱାଧୀନତା ସଂଗ୍ରାମୀ ମାଗୁଣି ଦାଶଙ୍କ ଅବଦାନ ଓଡ଼ିଆ ଭାଷା ଓ ସାହିତ୍ୟର ସମୃଦ୍ଧି ଲାଗି ସହାୟକ ହୋଇଛି। ଅର୍ଦ୍ଧଶତାବ୍ଦୀର ସାଧନା ତାଙ୍କୁ ସୁପରିଚିତ କରାଇଛି ଗଞ୍ଜାମ ତଥା ଓଡ଼ିଶାର ସାହିତ୍ୟ ଜଗତରେ। ଭଞ୍ଜନଗରର 'ଭଞ୍ଜ ସାହିତ୍ୟ ପରିଷଦ' (୧୯୪୮)ର ସେ ସଂପାଦକ ଥିଲେ। ଯଦିଓ ଏ ଅନୁଷ୍ଠାନର ବହୁମୁଖୀ ଲକ୍ଷ୍ୟ ଥିଲା। ଆଜି କିନ୍ତୁ ଭଞ୍ଜନଗରରେ କେବଳ ଭଞ୍ଜଜୟନ୍ତୀ ସପ୍ତାହବ୍ୟାପୀ ସମାରୋହରେ ପାଳନ କରି ଭଞ୍ଜନଗରରେ ଭଞ୍ଜ ସାହିତ୍ୟର ସତ୍ତା, ସ୍ଥିତି ଓ ସମାଦରର ପ୍ରମାଣ ଦେଉଛି। ଏ ଅନୁଷ୍ଠାନ ଏକ ଲୋଭନୀୟ ଅନୁଷ୍ଠାନ। ଏହାର ଭବିଷ୍ୟତ ଉଜ୍ଜ୍ୱଳ ନିଶ୍ଚୟ।

ସଙ୍ଗଠକ ମାଗୁଣି ଦାଶ ଗାଁଗହଳରୁ ପ୍ରାଚୀନ ତାଳପତ୍ର ପୋଥି ସଂଗ୍ରହ କରି କେତେକ ପୋଥିର ସଂପାଦକ ଭାବେ ପ୍ରକାଶ କରି ଜାତୀୟ କାର୍ଯ୍ୟ ସଂପାଦନ କରିଛନ୍ତି। ନିଆଁ, ପାଣି, ମୂଷା, ଉଇଙ୍କ କବଳରୁ ରକ୍ଷା କରି ଲୋକଙ୍କ ପାଖରୁ ତାଳପତ୍ର ପୋଥି ସଂଗ୍ରହ କରି ପ୍ରକାଶ କରାଇବା ଏକ ଦୁରୂହ ବ୍ୟାପାର। ବହୁ ଆୟାସ ସାପେକ୍ଷ ତାହା ମାଗୁଣି ବାବୁ ଏକା ଏକା ତାହା କରିଛନ୍ତି। ଭକ୍ତ ଚରଣଙ୍କ 'ଶ୍ରୀରଘୁନାଥ ଜଣାଣ', ଉପେନ୍ଦ୍ରଙ୍କ 'ଷୋଳଚଉପଦୀ' 'ରସିକାନୁଚନ୍ଦ୍ରା' ଓ 'ଚଟାଉ' ଧନଞ୍ଜୟଙ୍କ 'ଶ୍ରୀକୃଷ୍ଣ କ୍ରୀଡ଼ା, ଗଙ୍ଗାପାଣି ମହାପାତ୍ରଙ୍କ 'ଭଞ୍ଜ ବଂଶ ଓ ଘୁମୁସର ବିଦ୍ରୋହ' ପ୍ରକାଶ କରି ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କାବ୍ୟ ଓ ଗୀତିକାବ୍ୟର ବ୍ୟାପକ ଆଲୋଚନା/ଗବେଷଣା କର୍ମକୁ ସେ ସହଜସାଧ୍ୟ କରି ଦେଇଛନ୍ତି। ପ୍ରାଚୀନ ସାହିତ୍ୟ ରସିକଙ୍କ ପାଠ ସୁଲଭ କରି ଦେଇଛନ୍ତି। ପୋଥାକୁ ଉଦ୍ଧାର କରିଛନ୍ତି। ଓଡ଼ିଶାରେ ପଣ୍ଡିତ ଗୋବିନ୍ଦ ରଥ, ଦାମୋଦର ପଟ୍ଟନାୟକ, ଆର୍ତ୍ତବଲ୍ଲଭ ମହାନ୍ତି, ବିଚ୍ଛନ୍ଦଚରଣ ପଟ୍ଟନାୟକ, କୁଞ୍ଜବିହାରୀ ଦାସ, ଜାନକୀ ବଲ୍ଲଭ ମହାନ୍ତି, ସଦାଶିବ ରଥ ଶର୍ମା, ନୀଳମଣି ମିଶ୍ର, ସଚ୍ଚିଦାନନ୍ଦ ମିଶ୍ର, ଦୁର୍ଗାମାଧବ ନନ୍ଦ ପ୍ରଭୃତି ସାହିତ୍ୟ ସେବକ/ଗବେଷକ/ସାଧକ ତାଳପତ୍ର ପୋଥି ସଂଗ୍ରହ କରି ପ୍ରାଚୀନ ଓଡ଼ିଆ

ସାହିତ୍ୟର ବହୁ ବୈଚିତ୍ର୍ୟପୂର୍ଣ୍ଣ ବିଭାଗକୁ ଲୋକଲୋଚନକୁ ଆଣି ଯେଉଁ ମହାନ ଜାତୀୟ କାର୍ଯ୍ୟ କରିଛନ୍ତି ସେ କାର୍ଯ୍ୟକୁ ମାଗୁଣି ବାବୁ ଅଧିକ ବୃଦ୍ଧିମନ୍ତ ଜାତିର ପ୍ରଶଂସା ଭାଜନ ହୋଇଛନ୍ତି । ଆମେ ତାଙ୍କ ସାଧନାକୁ ପ୍ରଣାମ କରୁଛୁ ।

ଜଣେ ଗବେଷକ ଓ ଆଲୋଚକ ଭାବେ ସେ ବହୁ ପ୍ରବନ୍ଧ ରଚନା କରି ନାନା ତଥ୍ୟର ପରିବେଷଣ କରିଛନ୍ତି । ପାଠକ ତଥା ତରୁଣ ଲେଖକ/ଗବେଷକଙ୍କ ପାଇଁ ସେ ସବୁ ଉପାଦେୟ । ନୂଆ ପାଠକ/ସମାଲୋଚକ ପୁରୁଣା ସାହିତ୍ୟର ସନ୍ଧାନ ପାଉଛନ୍ତି । ସ୍ୱାଦ ଗ୍ରହଣ କରୁଛନ୍ତି । ମାଗୁଣି ବାବୁ ଏକ ମଧୁର ବ୍ୟକ୍ତିତ୍ୱ । ତାଙ୍କର ସରଳ ନିଷ୍କପଟ ଅମାୟିକ ସାମାଜିକ ବ୍ୟକ୍ତିତ୍ୱର ଆକର୍ଷଣ ଅନେକ କମନୀୟ । ନିଷ୍ଠାପରେ ନିଷ୍ଠିତ ଭାବେ ଉତ୍ତର ଜୀବନରେ ବାଣୀ ପାଇଁ [illegible] ଭଗବାନ ତାଙ୍କୁ ନିରୋଗ ଜୀବନ, ଅଦମ୍ୟ ପ୍ରେରଣା ଓ ଅସାମାନ୍ୟ ଶକ୍ତି ଦିଅନ୍ତୁ ।



ଓଡ଼ିଆ ବିଭାଗ
ନବରଙ୍ଗପୁର କଲେଜ,
ନବରଙ୍ଗପୁର

# ସମାନ୍ତରାଳ ସରଳରେଖାରେ ସେ ଓ ମୁଁ

## ଶ୍ରୀ ବୈଦ୍ୟନାଥ ପାଣିଗ୍ରାହୀ

ମାଗୁଣି ବାବୁଙ୍କ ସହ ପରିଚୟ ବହୁ ଦିନରୁ । ତାଙ୍କ ଘର ଜଗନ୍ନାଥ ପ୍ରସାଦ ନୀଳକଣ୍ଠବର୍ତ୍ତୀ ଜଗନ୍ନାଥପୁର ଶାସନ । ମୋ ଘର କଲେଢ଼ା ନାରାୟଣ ପାଟଣା । ଶେରଚନ୍ଦ୍ର ଅଟନ୍ତି ସ୍ୱଦେଶୀ ଆନ୍ଦୋଳନବେଳେ । ସେ ମୋ ଠାରୁ ବୟସରେ ଚାରି ପାଞ୍ଚ ବର୍ଷ ସମ୍ଭବତଃ ବଡ଼ । ଉଭୟେ ଜନ୍ମ ମଧ୍ୟବିତ୍ତ ପରିବାର ଓ ପଲ୍ଲୀ ପରିବେଶରୁ ଆସିଛୁ । ଜୀବନ ସଂଗ୍ରାମର ଝଡ଼ରେ ସେ ଓ ମୁଁ ଦୁଇଟି ସମାନ୍ତରାଳ ଧାରରେ ଏ ଯାଏଁ ଚାଲିଛୁ । ଉଭୟେ ଏକ ଜାତିର ହେଲେ ବି ଆମର ଦୁଇ ଜୀବନ ଆପେ ଆପେ ଭିନ୍ନ ମୋଡ଼ ନେଇଛି । ସେ ରକ୍ଷଣଶୀଳ ଶାସନୀ ବ୍ରାହ୍ମଣ ପରିବାରରୁ ଆସିଥିବାରୁ ସଂସ୍କୃତ, ଆୟୁର୍ବେଦାଦି ଅଧ୍ୟୟନ କଲେ । ହାଇସ୍କୁଲ ଶିକ୍ଷା ପରେ ସେ ପଢ଼ାରେ ଡୋରିବାନ୍ଧିଲେ । ମୁଁ ଉତ୍କଳ ଦେଶରେ ମଧ୍ୟରେ ଖଲ୍ଲିକୋଟ କଲେଜରେ ସ୍ନାତକ ଶିକ୍ଷା ପରେ ବ୍ରହ୍ମପୁରରେ ସାପ୍ତାହିକ ପତ୍ରିକା ସଂପାଦନା କଲି । ସେତେବେଳେ ମାଗୁଣି ବାବୁଙ୍କ ଭକ୍ତି କବିତାଗୁଡ଼ିକ ମୋ ପ୍ରେସ୍‌ରେ ଛପା ହୋଇଥିଲା ।

୧୯୪୨ରୁ ୪୭ ମସିହା ପର୍ଯ୍ୟନ୍ତ ଉଭୟେ ସ୍ୱାଧୀନତା ସଂଗ୍ରାମରେ କାର୍ଯ୍ୟ କରିଛୁ । ମୁଁ ଇଂରେଜ ଫ୍ଲାଗ୍ ପୋଡ଼ି ଆତ୍ମ ଗୋପନ କରିଛି । ଚରଖା ଚଲାଇଛୁ । ଖଜୁରୀ ଗଛ କାଟିଛୁ । ମାଗୁଣିବାବୁ ବି ପିକେଟିଂ କରିଛନ୍ତି, ଧରା ହୋଇ ଜେଲ୍ ଯାଇଛନ୍ତି । ଆମ ସହ ଯୋଗ ଦେଇଥିବା ସୂତ୍ରପୁରର ବହୁ ସଂଗ୍ରାମୀ ଚାଲିଗଲେଣି । ମାଧବ ରାଉତ, ହରି ପତି, ମହାଦେବ ପଣ୍ଡା, ବାଞ୍ଛାନିଧି ପଟ୍ଟନାୟକ ଆଉ ନାହାନ୍ତି । କିନ୍ତୁ ସେ ସମୟର ଅନୁଭୂତି ଆଜିକାଲିର ପିଲା ସହଜରେ ହୃଦୟଙ୍ଗମ କରି ପାରିବେ ନାହିଁ ।

ମାଗୁଣି ବାବୁ ଓ ମୁଁ ଉଭୟେ ଜାତୀୟ କଂଗ୍ରେସ୍‌ରେ ଥିଲୁ । ସେ ସଂପୂର୍ଣ୍ଣ କଂଗ୍ରେସ୍ ଅନୁଗତ ଥିଲେ । ମୁଁ ବାମପନ୍ଥୀ ଦୃଷ୍ଟିଭଙ୍ଗୀର ଥିଲି । ଗୋବିନ୍ଦ ପ୍ରଧାନଙ୍କ ସହ ବହୁ ଦିନ କାର୍ଯ୍ୟ କଲି । ମୋର ଏହି ଦୃଷ୍ଟିଭଙ୍ଗୀ ପାଇଁ ସେତେବେଳେ ମୋତେ ବହୁ ବରିଷ୍ଠ କଂଗ୍ରେସ ନେତାଙ୍କ ରୋଷ ଦୃଷ୍ଟିର ଶିକାର ହେବାକୁ ପଡ଼ିଲା । ସେ ଦେଶ ସ୍ୱାଧୀନ ହେଲା ପରେ ଲୋକ ସଂପର୍କ ବିଭାଗରେ

# ଜାତୀୟ ଆନ୍ଦୋଳନରେ ମାଗୁଣି ଦାଶ

**ଡକ୍ଟର ଭି. ଶୁକେନ୍ଦ୍ର ରାଜୁ**

ଏ ଦେଶର ରାଜନୈତିକ ଓ ସାଂସ୍କୃତିକ ଐତିହ୍ୟ ପଥ ଅବସ୍ମରଣୀୟ ଅବଦାନ ଦୃଷ୍ଟିରୁ ଓଡ଼ିଆ ଜାତିର ଇତିହାସରେ 'ଘୁମୁସର' ଗୋଟିଏ ପରିଚିତ ନାମ । ଏ ରାଜ୍ୟର ପାଣି ଓ ପବନରେ ଜାତୀୟତା ମନୋଭାବ ଏପରି ସଞ୍ଚାରିତ ହୋଇଥିଲା ଯେ ବିଂଶ ଶତାବ୍ଦୀରେ ଅନେକ କବି ଓ ରାଜନୈତିକ ନେତା ଏଠାରେ ସୃଷ୍ଟି ହୋଇଥିଲେ । ସେମାନଙ୍କ ମଧ୍ୟରୁ ଅନେକ ରାଜ ପରିବାରରେ ଜନ୍ମ ନେଇ ନ ଥିଲେ କି ଆର୍ଥିକ ସ୍ୱଚ୍ଛଳ ପରିବାରର ବ୍ୟକ୍ତି ନଥିଲେ । ତଥାପି ନିଜ ପ୍ରଚେଷ୍ଟାରେ ନିଜେ ଏ ଜାତି ପାଇଁ ଅନେକ କିଛି କରି ଯାଇଛନ୍ତି । ମାଗୁଣି ଦାଶ ଏମାନଙ୍କ ମଧ୍ୟରୁ ଅନ୍ୟତମ ।

ଘୁମୁସର ରାଜ୍ୟର ୧୨ ଶାସନ ଅନ୍ତର୍ଗତ ଜଗନ୍ନାଥ ପ୍ରସାଦ ନିକଟବର୍ତ୍ତୀ ଜଗନ୍ନାଥପୁର ଗ୍ରାମରେ ସେ ୧୯୧୦ ମସିହା ଜାନୁଆରୀ ମାସ ଏକ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀଯୁକ୍ତ ଅନନ୍ତ ଦାଶ ଓ ମା'ଙ୍କ ନାମ ଶ୍ରୀମତୀ ରେବତୀ ଦେବୀ ଅଟେ । କୌଣସି ଭଞ୍ଜ ରାଜାଙ୍କ ଅନୁଗ୍ରହ ପାଇ ଏହାଙ୍କ ପୂର୍ବପୁରୁଷଗଣ ପୁରୀରୁ ଏଠାକୁ ଆସିଥିଲେ । ଏମାନେ ବୈଷ୍ଣବ ବ୍ରାହ୍ମଣ ଅଟନ୍ତି । ପୌରହିତ୍ୟ କାର୍ଯ୍ୟ ହିଁ ଏମାନଙ୍କର କୌଳିକ ବୃତ୍ତି ଥିଲା । ଜଗନ୍ନାଥ ପ୍ରସାଦର ରାଜ ପ୍ରତିଷ୍ଠିତ ମନ୍ଦିରମାନଙ୍କରେ ଏହାଙ୍କର ପରିବାର ପୌରହିତ୍ୟ କାର୍ଯ୍ୟ କରି ଜୀବିକା ନିର୍ବାହ କରୁଥିଲେ ।

ପିତା ଅନନ୍ତ ଦାଶଙ୍କର ଦୁଇଟି ସନ୍ତାନ ଗୋଟିଏ ପରେ ଗୋଟିଏ ଅକାଳ ମୃତ୍ୟୁବରଣ କରିଥିବା ଯୋଗୁଁ ତୃତୀୟ ସନ୍ତାନ ଭୂମିଷ୍ଠ ହେଲାବେଳେ ତାଙ୍କ କେନେରେ ସନ୍ତାନର ଦୀର୍ଘ ଜୀବନ କାମନା କରି ଠାକୁରଙ୍କ ନିକଟରେ ଅନେକ ପ୍ରାର୍ଥନା କରିଥିଲେ । ସନ୍ତାନଟି ଜନ୍ମ ହେଉ ହେଉ ସେ ସାତ ଘରୁ କଣ୍ଟା ତେଲ ଇତ୍ୟାଦି ମାଗି ଆଣି ତା ଦେହରେ ଦେଇଥିଲେ ଏବଂ ସାତ ଘରୁ ଆଣିଥିବା ସାତ ଖଣ୍ଡ କନା ଓ ସାତ ଗୋଟି କଉଡ଼ି ସୂର୍ଯ୍ୟଙ୍କୁ ଉତ୍ସର୍ଗ କରି ସନ୍ତାନଟିର ନାମ ଦେଇଥିଲେ ମାଗୁଣି । କାରଣ ଏ ସବୁ ମାଗି ଆଣିଥିଲେ ବୋଲି ।

ପରିବାରର ସ୍ନେହ ଓ ଆଦରରେ ସେ ବଢି ଆସିଲେ । ୧୯୧୪ ମସିହା ମେ ମାସ ପାଞ୍ଚ ତାରିଖରେ ସେ ପ୍ରଥମେ ବିଦ୍ୟାରମ୍ଭ କଲେ । ନିଜ ଗାଁରେ ସ୍କୁଲ ନ ଥିଲା । ଏଣୁ ସେ ଜଗନ୍ନାଥ ପ୍ରସାଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଥିଲେ । ଶ୍ରୀଯୁକ୍ତ ଲୋକନାଥ ଦାଶ ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ ଓ ଶ୍ରୀ ବାମଦେବ ଷଡଙ୍ଗୀ ଦ୍ୱିତୀୟ ଶିକ୍ଷକ ଥିଲେ । ସେମାନଙ୍କର ପ୍ରଚେଷ୍ଟା ଯୋଗୁଁ ମାଗୁଣି ବାବୁ ବେଶ ଭଲ ଶିକ୍ଷା ପାଇଥିଲେ ଏବଂ କୃତିତ୍ୱର ସହ ପଞ୍ଚମ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ ଷଢୀସ୍ୱରପୁର ହାଇସ୍କୁଲ ଏଲିମେଣ୍ଟାରୀ ସ୍କୁଲରେ ଅଧ୍ୟୟନ ଆରମ୍ଭ କଲେ ।

ସେ ଏକ ମଧ୍ୟବିତ୍ତ ପରିବାରରେ ଜନ୍ମ ନେଇଥିବା ଯୋଗୁଁ ପଢ଼ାପଢ଼ି କରିବା ତାଙ୍କ ପକ୍ଷେ ଖୁବ କଷ୍ଟ ହେଲା । କିନ୍ତୁ ତାଙ୍କ ଅଜା ଏହି ସମୟରେ ଆର୍ଥିକ ସାହାଯ୍ୟ ଯୋଗାଇ ତାଙ୍କର ପଢ଼ା ପ୍ରତି ଦୃଷ୍ଟି ଦେଉଥିଲେ ।

ମାଗୁଣି ବାବୁଙ୍କ ଅଜା ଶ୍ରୀଯୁକ୍ତ ରଘୁନାଥ ଶତପଥି ଷଢୀସ୍ୱରପୁରର ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ । ତତ୍କାଳୀନ ସମୟରେ ସେ ଜଣେ ସ୍ୱାଧୀନଚେତା ବ୍ୟକ୍ତି ଥିଲେ । ଏଣୁ ସେ କଂଗ୍ରେସର ସାମୂହିକ ଉନ୍ନତି ପାଇଁ ଅନେକ ସାହାଯ୍ୟ କରିଥିଲେ । ଏପରିକି ନିଜ ଅସ୍ଥିନ କରଟିକୁ ସେ ବନ୍ତାମ ଜିଲ୍ଲା କଂଗ୍ରେସ କମିଟିକୁ ଦାନ କରିଥିଲେ । ଏହା ବାଦେ ସେ ଧାର୍ମିକ ବ୍ୟକ୍ତି ମଧ୍ୟ ଥିଲେ । ଏଣୁ ସେ ନିଜ ଅଞ୍ଚଳରେ ବୃନ୍ଦାବନଚନ୍ଦ୍ର ମଠର ପ୍ରତିଷ୍ଠା ବେଳେ ଅନେକ ସାହାଯ୍ୟ କରିଥିଲେ ।

ମାଗୁଣି ବାବୁ ହରିଶ୍ଚନ୍ଦ୍ରପୁରଠାରେ ଅଧ୍ୟୟନ କଲାବେଳେ ଅନେକଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏବଂ ଭଲ ମଣିଷଟିଏ ହେବା ପାଇଁ କଳ୍ପନା କରିଥିଲେ । ମାଗୁଣି ବାବୁ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଭାରତରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା । ରମାଦେବୀ, ସରଳା ଦେବୀ, କୁନଲତା ଦେବୀ, ନିରଞ୍ଜନ ପଟ୍ଟନାୟକ, ଓ ରଘୁନାଥ ଦାସ ପ୍ରମୁଖ ନେତାମାନେ ଗାଁ ଗାଁରେ ସ୍ୱାଧୀନତା ଆନ୍ଦୋଳନର ପଥ ଉନ୍ମୁକ୍ତ କରୁଥିଲେ । ଗୁପ୍ତ ଆତଙ୍କ ଇଂରେଜ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ହେଉଥାଏ । ସତ୍ୟାଗ୍ରହର ବାର୍ତ୍ତା ଘରେ ଘରେ ପ୍ରଚାରିତ ହେଲା । ଅଗରେ ଆଦର ବଢ଼ିଲା । ଲୋକେ ସ୍ୱଦେଶୀ ବସ୍ତ୍ର ପରିଧାନ କରି ବିଦେଶୀ ବର୍ଜନ କଲେ । 'ମହାତ୍ମା ଗାନ୍ଧୀଙ୍କ ଜୟ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଲା । ଯାହାର ପ୍ରଭାବ ବାଳକ ମାଗୁଣି ଉପରେ ଯଥେଷ୍ଟ ପଡ଼ିଲା ଓ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ମନ ବଳାଇଲେ ।

ଠିକ୍ ଏହିକ ବେଳେ ମାଗୁଣି ବାବୁଙ୍କ ଦଦେଇ ପୁଅ ଭାଇ ଶ୍ରୀ ଚନ୍ଦ୍ରମଣି ଦାଶ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ସେ ଜଣେ ଗାଳ୍ପିକ ଥିଲେ । ଗାଁ ଗାଁ ବୁଲି ସେ ଲୋକଙ୍କୁ ଗପ କହି ପଇସା ରୋଜଗାର କରୁଥିଲେ । କିନ୍ତୁ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଯେତେବେଳେ ସାରା ଭାରତରେ ଏକ ଆନ୍ଦୋଳନ ସୃଷ୍ଟି କରିଥିଲା ସେତିକିବେଳେ ଚନ୍ଦ୍ରମଣି ଦାଶ ଗଳ୍ପ ମାଧ୍ୟମରେ ଆଜନ ଅମାନ୍ୟ ଆନ୍ଦୋଳନର କଥା ଲୋକଙ୍କୁ ବୁଝାଇଲେ । ତାଙ୍କ ଗଳ୍ପରେ ବାପୁଜୀଙ୍କ ବାର୍ତ୍ତା ତଥା ସତ୍ୟାଗ୍ରହର ଅଗ୍ରଗତି କଥା ରହୁଥିଲା । ଏହାର ପ୍ରଭାବ ମାଗୁଣି ବାବୁଙ୍କ ଉପରେ ଯଥେଷ୍ଟ ପଡ଼ିଲା । ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ଭାବିଲେ । କିନ୍ତୁ ତାଙ୍କୁ ଉପଯୁକ୍ତ ସୁଯୋଗ ମିଳୁ ନ ଥିଲା ।

ଛତିସ୍ୱରପୁର ଉଚ୍ଚ ବିଦ୍ୟାଳୟର ବାତାବରଣ ସେ ସମୟରେ ବେଶ ଉତ୍ତମ ଥିଲା । ତତ୍କାଳୀନ ଶିକ୍ଷକ ଶ୍ରୀ କିଶୋରଚନ୍ଦ୍ର ଦାଶ, ଶ୍ରୀ ବାଞ୍ଛାନିଧି ଗୌଡ଼ କାଶିନାଥ ପଣ୍ଡାଙ୍କ, ଆଦର୍ଶ ଛାତ୍ରମାନଂକ ଉପରେ ଯଥେଷ୍ଟ ପଡ଼ୁଥାଏ । ପ୍ରଧାନ ଶିକ୍ଷକ କିଶୋରଚନ୍ଦ୍ର ଦାଶ ଛାତ୍ରମାନଙ୍କୁ ଉତ୍ତମ ଚରିତ୍ର ଗଠନ କରିବା ପାଇଁ ସବୁବେଳେ କହୁଥିଲେ । ସାହାର ପ୍ରଭାବ ମାଗୁଣି ଦାଶଂକ ଉପରେ ଯଥେଷ୍ଟ ପଡ଼ିଥିଲା । କାଶିନାଥ ପଣ୍ଡା ଜଣେ ଶିକ୍ଷକ ହେଲେ ବି ସେ ଜଣେ ସୁଲେଖକ ତାଂକ ରଚିତ ପୁସ୍ତକ 'ମାନବ ଧର୍ମ' ଏକ ଉଚ୍ଚ କୋଟୀର ରଚନା । ଏହା ମାଗୁଣି ବାବୁଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । କ୍ରମଶଃ ତତ୍କାଳୀନ ବାତାବରଣ ତାଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ପ୍ରେରଣା ଦେଲାବେଳେ ମଧୁବାବୁ ଇହଲୀଳା ସାଙ୍ଗ କଲେ । ତାଂକ ସମ୍ମାନାର୍ଥେ ଗୋବରର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଞ୍ଛାନିଧି ପଟ୍ଟନାୟକ ଏକ ଶୋକସଭାର ଆୟୋଜନ କରିଥିଲେ । ଏହି ସଭାରେ ମାଗୁଣି ଦାଶ ପ୍ରଥମେ ମଧୁବାବୁଂକ ବିଷୟରେ ଏକ ସଂକ୍ଷିପ୍ତ ଭାଷଣ ଦେଇ ସମସ୍ତଙ୍କୁ ମୁଗ୍ଧ କରିଥିଲେ । ଏହା ଥିଲା ତାଂକ ଜୀବନର ପ୍ରଥମ ଭାଷଣ । ସେଇଠୁ ଆରମ୍ଭ ହେଲା ତାଂକର କଂଗ୍ରେସରେ ଯୋଗଦାନ ଓ ବାଞ୍ଛାନିଧି ପଟ୍ଟନାୟକଂକ ସହ ଯୋଗଦେଇ ବିଭିନ୍ନ କାର୍ଯ୍ୟ ଆରମ୍ଭ କଲେ । ପରିଶେଷରେ ସେ ୧୯୩୭ ମସିହାରେ ଶିକ୍ଷା ବର୍ଜନ କରି କଂଗ୍ରେସରେ ଯୋଗଦେଲେ । ସେତିକିବେଳେ ସେ ମାତ୍ର ଅଷ୍ଟମ ଶ୍ରେଣୀ ପଢ଼ୁଥିଲେ ।

ଏହି ସମୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା । ବିଧାନସଭା ପାଇଁ କଂଗ୍ରେସ ପ୍ରାର୍ଥୀମାନେ ନିର୍ବାଚନରେ ଲଢ଼ିଲେ । ସେ କଂଗ୍ରେସ୍ ପ୍ରାର୍ଥୀ ବିଶ୍ୱନାଥ ଦାଶଂକ ସପକ୍ଷରେ ଉକ୍ତ ନିଜ ଅଞ୍ଚଳରେ ନିର୍ବାଚନ ପ୍ରଚାର

କରିଥିଲେ । ତାଙ୍କ ସଂସର୍ଗରେ ସେ ବିଶ୍ୱନାଥ ଦାସଙ୍କ ଅତି ଆପଣାର ହୋଇ ଯାଇଥିଲେ ଓ କଂଗ୍ରେସର ଜଣେ ଭଲ କର୍ମୀ ରୂପେ ପରିଗଣିତ ହେଲେ । ଏହା ପରେ ସେ ନିଜ ଅଞ୍ଚଳରେ 'ବିଶ୍ୱନାଥ ସେବା ସମିତି' ନାମକ ଏକ ଅନୁଷ୍ଠାନ ଗଢ଼ି ସେ ଅଞ୍ଚଳର ସର୍ବ ଗଠନ ମୂଳକ କାର୍ଯ୍ୟରେ ଯୋଗ ଦେଇଥିଲେ । ସେ ଅନୁଷ୍ଠାନର ସେ ସଂପାଦକ ଥିଲେ । ସେ ସମୟରେ ଜଗନ୍ନାଥ ପ୍ରସାଦ ଠାରୁ କଟକର ବଡ଼ ଓ ପଞ୍ଚଭୂତଙ୍କୁ ଦେଖା ନ ଥିଲା । ଏଥି ପାଇଁ ସେ ଆନ୍ଦୋଳନ କରି ସେମାନଙ୍କ ପାଇଁ ସରକାରଙ୍କୁ ବାଧ୍ୟ କରାଉଥିଲେ । ଗୁମୁସର 'ଶରତ' ପତ୍ରର ସଂପାଦକ ଲକ୍ଷ୍ମୀମଣି ପଣ୍ଡା ମହନ୍ତ ପରିବାର ପାଇଁ ଯେଉଁ ସଭାର ଆୟୋଜନ କରିଥିଲେ ସେଥିରେ ମଧ୍ୟ ସେ ଯୋଗଦେଇ ଗୁମୁସରରେ ତୀବ୍ର ଆନ୍ଦୋଳନ କରିଥିଲେ ।

ସ୍ୱାଧୀନତା ସଂଗ୍ରାମର ବିଭିନ୍ନ କାର୍ଯ୍ୟରେ ଯୋଗ ଦେବା ଯୋଗୁଁ ସରକାର କଲେଜରୁ ବାହାର କଲେ । ଏଣୁ ସେ ଜଗନ୍ନାଥ ପ୍ରସାଦ ନିକଟସ୍ଥ 'ଗଡ଼ଗଡ଼ି' ଗ୍ରାମର ପାଥମିକ ବିଦ୍ୟାଳୟରେ ଶିକ୍ଷକ ରୂପେ ଯୋଗଦେଲେ । ଏହି ଦେଶସେବା ତାଙ୍କର ଜୀବନ ଥିଲେ ବି ସେବାରେ ଶୃଙ୍ଖଳ ଯୋଗୁଁ ସେ ଚାକିରି କରିବାକୁ ବାଧ୍ୟ ହେଲେ । ସେତେବେଳେ ମାସିକ ଦରମା ମାତ୍ର ୯ ଟଙ୍କା ଥିଲା । ପରେ ବିଦ୍ୟାଳୟର ପରିଚାଳନା ତ୍ରୁଟି ଯୋଗୁଁ ସେ ଏହାର ପ୍ରତିବାଦ କରି କାର୍ଯ୍ୟରୁ ଅନ୍ତର ହୋଇଥିଲେ ।

ଶିକ୍ଷକତା କାର୍ଯ୍ୟରୁ ଅନ୍ତର ହେବାପରେ ସେ ଆୟୁର୍ବେଦ ଶିକ୍ଷା କରିବା ପାଇଁ ମନ ବଳାଇଲେ । ଏଣୁ ସେ ଉତ୍କଳ ଗୌରବ ନୀଳକଣ୍ଠ ଦାସଙ୍କ ପ୍ରତିଷ୍ଠିତ 'ଗୁମୁସର ଆୟୁର୍ବେଦ ପ୍ରଚାର ସମିତି' ବେଳଗୁଣ୍ଠା ଅନୁଷ୍ଠାନରେ ଅଧ୍ୟୟନ କରିବା ପାଇଁ ଯୋଗଦେଲେ । ସେଠାରେ ସେ ଆୟୁର୍ବେଦ ଶାସ୍ତ୍ରୀ ଉପାଧି ଲାଭ କଲେ । ଏହାପରେ ସେ ୧୯୩୧ ମସିହାରେ ସହପାଠୀ କବିରାଜ ଅନନ୍ତରାମ କରଙ୍କ ସହ ମିଶି 'ଗୋପବନ୍ଧୁ ଭୈଷଜ୍ୟ ଭବନ' ନାମକ ଏକ ଆୟୁର୍ବେଦ ଔଷଧାଳୟ ସ୍ଥାପନ କଲେ । ସେଠାରେ ସେ ଆୟୁର୍ବେଦ ଔଷଧ ପ୍ରସ୍ତୁତ କଲେ ଓ ଆୟୁର୍ବେଦ ଚିକିତ୍ସା ଆରମ୍ଭ କଲେ ମଧ୍ୟ ସ୍ୱାଧୀନତା ସଂଗ୍ରାମରୁ ଓହରି ନ ଥିଲେ ।

ଏହି ବର୍ଷ ଶେଷବେଳକୁ ନିରଞ୍ଜନ ପଟ୍ଟନାୟକ, ଉମାଚରଣ ପଟ୍ଟନାୟକ ଓ ବିଶ୍ୱନାଥ ଦାସ ପ୍ରମୁଖ ଗଞ୍ଜାମ ଜିଲ୍ଲାରେ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ପ୍ରୟାସ କରୁଥିଲେ । ଜିଲ୍ଲାର ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହୀ ତାଲିମ କେନ୍ଦ୍ର ଖୋଲି ସତ୍ୟାଗ୍ରହୀମାନଙ୍କୁ ବାପୁଜୀଙ୍କ

ଜନ୍ମାପାରର ଅନୁପ୍ରାଣିତ କରୁଥିଲେ । ମାଗୁଣି ଦାଶ ଏଠାରେ ତାଲିମ ନେଲେ । ତାଙ୍କ ସହ ଘନଶ୍ୟାମ ପଟ୍ଟନାୟକ, ଆନନ୍ଦ ମୋହନ ପଟ୍ଟନାୟକ, ଗ୍ରମାନନ୍ଦ ପଟ୍ଟନାୟକ, ଗୋପାଳ ଦାଶ ଓ ଶ୍ରୀଚରଣ ପଣ୍ଡା ପ୍ରମୁଖ ଏଠାରେ କାର୍ଯ୍ୟରତ ଥିଲେ । ଏହି ତାଲିମ କେନ୍ଦ୍ରକୁ ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ମାଳତୀ ଦେବୀ, ସରଳା ଦେବୀ ଓ ନବକୃଷ୍ଣ ଚୌଧୁରୀ ପ୍ରମୁଖ ଆସି ଶିକ୍ଷା ଦେଉଥିଲେ । ଓଡ଼ିଶାର ଏହି ବରିଷ୍ଠ ନେତୃବୃନ୍ଦମାନଙ୍କଠାରୁ ସେ ସତ୍ୟାଗ୍ରହର ମାର୍ଗ ପାଇଥିଲେ ଓ ତାହାକୁ ସେ ନିଜ ଜୀବନରେ ବିନିଯୋଗ କରିଥିଲେ ।

ଏହାପରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ମାଡ଼ି ବିଶ୍ୱରେ ଘନେଇ ଉଠିଲା । ଭାରତର ରାଜନୀତିରେ ପରିବର୍ତ୍ତନ ଦେଖାଦେଲା । ଲୋକ ପ୍ରତିନିଧି ମନ୍ତ୍ରୀମାନଙ୍କ ସହିତ କୌଣସି ପରାମର୍ଶ ନ କରି ବଡ଼ଲାଟ୍ ପାର୍ଲିଆମେଣ୍ଟ ଜରିଆରେ ଭାରତକୁ ଯୁଦ୍ଧରେ ସହଯୁକ୍ତ କରିଦେବାରୁ ତାହାର ପ୍ରତିବାଦ ସ୍ୱରୂପ ଗାନ୍ଧୀଙ୍କ ନିର୍ଦ୍ଦେଶରେ କଂଗ୍ରେସ୍ ସ୍ଥିର କଲା ଯେ କଂଗ୍ରେସ ଦଳର ମନ୍ତ୍ରୀମାନେ ଇସ୍ତଫା ଦେଇ ପ୍ରାଦେଶିକ ଶାସନରୁ ଅଲଗା ହୋଇଯିବେ, ତାହା ହିଁ ହେଲା । ଏ ଯୁଦ୍ଧରେ ଭାରତବାସୀଙ୍କ ସହଯୋଗ ବା ସମର୍ଥନ ନାହିଁ । ଏହା ବିଶ୍ୱରେ ପ୍ରତିପାଦନ କରିବା ପାଇଁ ବାପୁଜୀ ଯୁଦ୍ଧ ବିରୋଧ ପ୍ରଚାର ଓ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ଭାରତର ବିଭିନ୍ନ ପ୍ରାନ୍ତରେ ଏହି ସତ୍ୟାଗ୍ରହ ଆରମ୍ଭ ହେଲା ।

ମାଗୁଣି ବାବୁ ଏ ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ବାପୁଜୀଙ୍କ ଅନୁମତି ଚାହିଁଲେ । ବାପୁଜୀ ତାଙ୍କୁ ଅନୁମତି ଦେବାରୁ ସେ ୧୯୪୧ ମସିହା ଜାନୁୟାରୀ ମାସ ୨୫ ତାରିଖରେ ପଞ୍ଚଭୁଣ୍ଡଠାରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ସେଠାରେ ସେ ଜନସାଧାରଣଙ୍କ ସମ୍ମୁଖରେ ହିଁ ଗିରଫ ହେଲେ । ବ୍ୟକ୍ତିଗତ ସତ୍ୟାଗ୍ରହ କରି ସେ ରସଲକୋଣ୍ଡା ସବଡ଼ିଭିଜନାଲ୍ ମାଜିଷ୍ଟ୍ରେଟଙ୍କ ଅଦାଲତରେ ୪ ମାସ ଅଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ । ତାଙ୍କ ସହ ଉମାଚରଣ ପଟ୍ଟନାୟକ, ମାଧବ ରାଉତ, ଦୀନବନ୍ଧୁ ପ୍ରଧାନ, ଗୋଦାବରୀଶ ଶତପଥି, ଚନଂଚେଟ୍ଟୀ ନାରସୁ ଯାନି, ଶ୍ୟାମସୁନ୍ଦର ପାଠୀ, କୃଷ୍ଣ ନାୟକ ଓ କାହ୍ନୁଚରଣ ପାଠୀ ସହବନ୍ଦୀ ଥିଲେ । ଭଞ୍ଜନଗର ଜେଲରୁ ସେ ବ୍ରହ୍ମପୁର ଜେଲକୁ ସ୍ଥାନାନ୍ତରିତ ହୋଇଥିଲେ । ସେଠାରେ ସେ ରାଜ୍ୟସ୍ତରୀୟ ନେତାମାନଙ୍କ ସହ ଏକାଠି ରହିଥିଲେ । ବ୍ରହ୍ମପୁର ଜେଲରେ ସେ ନାନା ନିର୍ଯ୍ୟାତନା ପାଇଥିଲେ । ଜେଲର ଛୁଞ୍ଚି କୋଠରୀରେ ରହି 'କଏଦୀର ଭାବନା' ସେ

ଲେଖିଥିଲେ । ଏହି କବିତା ତାଙ୍କର ନିଜସ୍ୱ ଭାବନାରେ ସମୃଦ୍ଧି ହୋଇଥିଲା । ବାପୁଙ୍କ ନିର୍ଦ୍ଦେଶରେ ସତ୍ୟାଗ୍ରହରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଗଞ୍ଜାମରେ ସ୍ୱାଧୀନତାର ବାର୍ତ୍ତା ପ୍ରେରଣ କରିଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ଇଂରେଜମାନଙ୍କ କବଳରୁ ମୁକ୍ତି ପାଇଥିଲା ।

କାନ୍ତାନ୍ତ ଚେତନାରେ ଉଦ୍‌ବୁଦ୍ଧ ହୋଇ ମାଗୁଣି ବାବୁ ଯେ କେବଳ ରାଜନୀତିରେ ଯୋଗ ଦେଇଥିଲେ ତାହା ନୁହେଁ - ସେ ଜଣେ ଗବେଷକ ମଧ୍ୟ ଅଟନ୍ତି । ଭଞ୍ଜ ସାହିତ୍ୟରେ ତାଙ୍କର ବିଶେଷ ଜ୍ଞାନ ଅଛି । ପିଲାଟି ବେଳୁ ସେ ତାରିଣୀ ଚରଣ ରଥଙ୍କ ଘୁମୁସର ଇତିହାସ ପାଠ କରି ଘୁମୁସର ଐତିହ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ଘୁମୁସରର ପ୍ରାକୃତିକ ପରିବେଶ ତଥା ଭଞ୍ଜଙ୍କ ରଚନାବଳୀ ପ୍ରତି ସେ ଆକୃଷ୍ଟ ହୋଇ ଲେଖନୀ ଚାଳନା କରିବା ସଙ୍ଗେ ସଙ୍ଗେ ଭଞ୍ଜଙ୍କ ଦୁଷ୍ପ୍ରାପ୍ୟ ରଚନା ସଂଗ୍ରହ କରିବାରେ ସେ ଆଜି ବି ବ୍ୟସ୍ତ । ତାଙ୍କ ରଚନା ସୀମିତ ହେଲେ ବି ତାହା ନିଜସ୍ୱ ଗୁଣରେ ସମୃଦ୍ଧ ।

ତାଙ୍କ ରଚିତ ଗୋପବନ୍ଧୁ ସ୍ମୃତି. ୧୯୯୧ର ଚେତନା, ନବୋଦିତ ଭାବନା, ଫୁଲବାଣୀର ବନ୍ଧ ସଂସ୍କୃତି, କମ୍ପ୍ୟୁଟରରେ ଭଞ୍ଜ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଭଞ୍ଜ ସାହିତ୍ୟ ପରିକ୍ରମା ଓ ଶ୍ରୀ ଶ୍ରୀ ମା ବୁଢାକେନ୍ଦୁ ଗୋଟିଏ ଗୋଟିଏ ଉତ୍କୃଷ୍ଟ ଧରଣର ରଚନା । ଏହାବ୍ୟତୀତ ଘୁମୁସର ଅଞ୍ଚଳର ଦେବାଦେବୀ ତଥା ବିଭିନ୍ନ ଧାର୍ମିକ ପୀଠ ଉପରେ ତାଙ୍କର ଆଲୋଚନାତ୍ମକ ପ୍ରବନ୍ଧ ମାନ ବେତାର ଓ ଦୂରଦର୍ଶନ ମାଧ୍ୟମରେ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ଆସନ୍ତାକାଲି, ପୌରୁଷ, ଦୃଷ୍ଟି, ସମାଜ, ପ୍ରଜାତନ୍ତ୍ର, ଆଶା ଓ ଧରିତ୍ରୀରେ ପ୍ରକାଶ ପାଇଛି । ମାଗୁଣି ବାବୁଙ୍କ ନିଜସ୍ୱ ରଚନାକୁ ବାଦ ଦେଲେ ସେ ନିଜ ପ୍ରଚେଷ୍ଟାରେ ଭଞ୍ଜଙ୍କ ଅନେକ ଦୁଷ୍ପ୍ରାପ୍ୟ ପାଣ୍ଡୁଲିପି ସଂଗ୍ରହ କରି ପ୍ରକାଶ କରିଛନ୍ତି । ସେଗୁଡ଼ିକ ମଧ୍ୟରୁ ଭଞ୍ଜ ବର୍ଣ୍ଣାନୁକରଣ, ଭଞ୍ଜନଗର ଓ ଘୁମୁସର ବିଦ୍ରୋହ, ଭଞ୍ଜ ବଂଶାବଳୀ, ଶ୍ରୀକୃଷ୍ଣ ଲୀଳା, ବାଙ୍କାଲପୋଇ ଓ ଚଉତି ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ଅମୂଲ୍ୟ ପୁସ୍ତକ ଅଟେ ।

ସ୍ୱାଧୀନତାର ସୂର୍ଯ୍ୟ ଉଇଁଲା ପରେ ମାଗୁଣି ବାବୁ ନୀରବ ହୋଇ ବସିନଥିଲେ । ସେ ଲୋକ ସଂପର୍କ ବିଭାଗରେ କାର୍ଯ୍ୟ କରି ଜିଲ୍ଲା ଲୋକ ସଂପର୍କ ଅଧିକାରୀ ରୂପେ କାର୍ଯ୍ୟରୁ ଅବସର ନେଇଛନ୍ତି । ଆଜି ବି ସେ କର୍ତ୍ତବ୍ୟ ରତ । ସମୟର ମୂଲ୍ୟକୁ ସେ ଠିକ୍ ରୂପେ ବୁଝି ତାର ଉପଯୋଗ କରିବାରେ ଲାଗିଛନ୍ତି । ଆଜି ବି ସେ ବିଭିନ୍ନ ଅନୁଷ୍ଠାନ ସହ ସଂପୃକ୍ତ । ଗଞ୍ଜାମ ଜିଲ୍ଲା ସ୍ୱାଧୀନତା

ସଂଗ୍ରାମୀ ସଂଗଠନର ସେ ସଂପାଦକ । ତାଙ୍କ ସଂପାଦନରେ ପ୍ରକାଶିତ ଗଞ୍ଜାମ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମୃତିଶିଖା ଏକ ଉପାଦେୟ ପୁସ୍ତିକା । ଏହା ଗବେଷକମାନଙ୍କୁ ବହୁ ତଥ୍ୟ ପ୍ରଦାନ କରିଅଛି । ଏହାବ୍ୟତୀତ ସେ ବିଭିନ୍ନ ସଂଗଠନ ସହ ସଂପୃକ୍ତ ରହି ଅନେକ ଲୋକ ହିତକର କାର୍ଯ୍ୟରେ ଆଜି ବି ବ୍ୟସ୍ତ । ତାଙ୍କ ଜୀବନର ଉତ୍ତରୋତ୍ତର ଉନ୍ନତି ହେଉ ଏହା ହିଁ ଆମ କାମନା ।



ଷ୍ଟେଟ୍ ଲୋଡ୍ ଡେସପାଚ ସେଣ୍ଟର

ଭୁବନେଶ୍ୱର-୧୭

# ଘୁମୁସର ଇତିହାସର ଆଲୋଚକ— ଶ୍ରୀ ମାଗୁଣି ଦାଶ

ଅଧ୍ୟାପକ ପ୍ରଭାକର ମହାପାତ୍ର

ଇତିହାସ ଗବେଷଣା, ଆଲୋଚନା ଓ ଅନୁଶୀଳନ ଏକ କଷ୍ଟକର ବ୍ୟାପାର । ଅନ୍ଧାର ଅସ୍ପଷ୍ଟପ୍ରାୟ ଅଞ୍ଚଳର ଇତିହାସର ପର୍ଯ୍ୟାଲୋଚନା । ଇତିହାସର ଗ୍ରନ୍ଥ ନ ହେଲେ ଏ ଦୁରୂହ ବ୍ୟାପାରରେ କେହି ହାତ ଦିଅନ୍ତି ନାହିଁ । କିନ୍ତୁ ମାଗୁଣି ବାବୁ ଇତିହାସର ଗ୍ରନ୍ଥ ନ ହୋଇ ହେଁ ଏଥିରେ ହାତ ଦେଇଛନ୍ତି । ଘୁମୁସରର ଗୌରବମୟ ଅତୀତର ସ୍ମାରକୀ ଓ ପରମ୍ପରା ତାଙ୍କୁ ଇତିହାସମୁଖୀ କରିଛି । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ପରବର୍ତ୍ତୀ କାଳରେ ଭଞ୍ଜ ସାହିତ୍ୟ ଆଲୋଚନାରେ ମନୋଯୋଗୀ ହୋଇଥିବା ମାଗୁଣି ବାବୁ ଘୁମୁସରର ଇତିହାସକୁ ଖୋଜିବା ପାଇଁ ଯାଇଛନ୍ତି ଦୁର୍ଗମ ପୁରପଲ୍ଲୀ ଓ କୋଠୀ ସଂଗ୍ରାହକମାନଙ୍କ ଦୁଆରକୁ । ମନରେ ପ୍ରବଳ ଆକାଂକ୍ଷା ଘୁମୁସରର ଗୌରବମୟ ଭଞ୍ଜ ରାଜବଂଶର ଇତିହାସକୁ ଆଲୋକକୁ ଆଣିଲେ । ଏକ ଅନାଲୋଚିତ ଦିଗକୁ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବେ । ଏକ ଅନୁଦ୍‌ଘାଟିତ ରହସ୍ୟକୁ ଉଦ୍‌ଘାଟନ କରିବେ । ବାସ୍ତବିକ୍ ଏ ଦୁଇଟି ଅଭିଳାଷ ତାଙ୍କର ସଫଳ ହୋଇଛି । ସେ ଆନ୍ତରିକ ଉଦ୍ୟମ ଓ ପ୍ରଚେଷ୍ଟା ବଳରେ ଓଡ଼ିଶା ଇତିହାସର ଏକ ଅନାଲୋଚିତ ଦିଗ ଘୁମୁସର ଇତିହାସକୁ ଲୋକଲୋଚନକୁ ଆଣିବାରେ ସମର୍ଥ ହୋଇଛନ୍ତି ।

ସ୍ୱର୍ଗତ ତାରିଣୀ ଚରଣ ରଥ ତାଙ୍କ ରଚିତ ଘୁମୁସର ଇତିହାସ ପୁସ୍ତିକାରେ ପ୍ରଥମେ ଘୁମୁସର ଉପରେ ଆଲୋଚନାର ଶୁଭାରମ୍ଭ କରିଥିଲେ । ତାଙ୍କ ପରେ ପରେ ତାଙ୍କ ପ୍ରେରଣାରେ ମାଗୁଣି ବାବୁ ଘୁମୁସର ସମ୍ପର୍କୀୟ ଅଧିକ ଆଲୋକପାତ ପାଇଁ ତାଳ ପୋଥିରୁ ସଂଗ୍ରହ କରି ଛାପିଛନ୍ତି ତିନି ଖଣ୍ଡି ଅମୂଲ୍ୟ ଗ୍ରନ୍ଥ ଯଥା— ଭଞ୍ଜ ବଂଶାନୁଚରିତ, ଭଞ୍ଜ ବଂଶାବଳୀ ଓ ଭଞ୍ଜବଂଶ ଓ ଘୁମୁସର ବିଦ୍ରୋହ । ଏହି ତିନୋଟି ଗ୍ରନ୍ଥ ତିନି ଜଣ ଲେଖକଙ୍କ ରଚନା । ଭଞ୍ଜବଂଶାନୁଚରିତ ପଦ୍ୟରେ ଲିଖିତ । ଏହାର ଲେଖକ ଅଜ୍ଞାତ । ମାଗୁଣି ବାବୁ ଏହାର ସମ୍ପାଦନା କରିଛନ୍ତି । ଏହାର ପ୍ରକାଶ କାଳ ୧୯୫୧ ମସିହା ।

କିନ୍ତୁ ଭଞ୍ଜବଂଶାବଳୀ ମଧ୍ୟରେ ଲିଖିତ ଏକ ତଥ୍ୟ ବହୁଳ ଗ୍ରନ୍ଥ । ଏହାର ଲେଖକ ନାମ ଅଜ୍ଞାତ । ତାଳପତ୍ର ପୋଥିରୁ ଏହି କିଲ୍ଲ ଖଣ୍ଡକୁ ସେ ଉଦ୍ଧାର କରି ୧୯୬୯ରେ ପ୍ରକାଶ କରନ୍ତି ନିଜ ଉଦ୍ୟମରେ । ଉକ୍ତ ପୁସ୍ତକର ତଥ୍ୟାବଳୀରେ ସାମ୍ୟ ଓ ସାଦୃଶ୍ୟ ଥିଲେ ବି କେତେକ ସ୍ଥଳରେ ଅସଙ୍ଗତରେ କିଛି କିଛି ବ୍ୟତିକ୍ରମ ଜଡ଼ିତ । ସେପରି ଭଞ୍ଜ ବଂଶ ଓ ମୟୂରଭଞ୍ଜର ବିଦ୍ରୋହ ମାଗୁଣୀ ଦାସଙ୍କ ଅନ୍ୟ ଏକ ଦୁର୍ଲ୍ଲଭ ଆବିଷ୍କାର ପରି ମନେହୁଏ । ଏହାର ଲେଖକ ସ୍ୱର୍ଗତ ଗଙ୍ଗାପାଣି ମହାପାତ୍ର । ଏହା ଗଦ୍ୟାକାରରେ ଲିଖିତ । ଏହାର ପ୍ରକାଶକାଳ ସନ ୧୯୭୮ । ସେବକ ସମ୍ପର୍କ ବିଭାଗ ଅଧିକାରୀ ଭାବେ ଅବସର ହେବା ପରେ ସେ ରାଜ୍ୟ ମାଂସ୍ୟ ଜିଲ ବ୍ୟାପାର ବିଭାଗର ଆର୍ଥିକ ସହାୟତାରେ ଏହାକୁ ଲେଖକଙ୍କ ନାମରେ ଛାପିଥିଲେ । ଏହା ଏକ ତଥ୍ୟ ବହୁଳ ପଦ୍ୟ ରଚନା । ଏଥିରେ ଭଞ୍ଜବଂଶର ଉତ୍ପତ୍ତି ଠାରୁ ବିଳସ ପର୍ଯ୍ୟନ୍ତ ବିସ୍ତୃତ ବିବରଣୀ ଲିପିବଦ୍ଧ ରହିଛି । ବିଶେଷ କରି ବିଶ୍ୱ ଇତିହାସ ମୟୂରଭଞ୍ଜର ସମର ଭଞ୍ଜ ରାଜାମାନଙ୍କ ସହ ଇଂରେଜମାନଙ୍କ ଲୋମହର୍ଷଣକାରୀ ସଂଗ୍ରାମର ବିସ୍ତୃତ ବିବରଣୀ ଏଥିରେ ଲିପିବଦ୍ଧ ରହିଛି । ଏହି ଅମୂଲ୍ୟ ଗ୍ରନ୍ଥ ପରବର୍ତ୍ତୀ କାଳରେ ବହୁ ପ୍ରବୀଣ ଓ ପ୍ରତିଷ୍ଠା ସମ୍ପନ୍ନ ଇତିହାସ ଗବେଷକମାନଙ୍କ ଗବେଷଣା କାର୍ଯ୍ୟରେ ସହାୟକ ହୋଇଅଛି । ମାଗୁଣି ଦାସଙ୍କ ସଙ୍କଳିତ ଏହି ଦୁଇ ଖଣ୍ଡ ଅମୂଲ୍ୟ ରଚନାକୁ ବାଦ ଦେଇ ମୟୂରଭଞ୍ଜ ଇତିହାସ ସମ୍ପର୍କରେ ଗବେଷଣା କରାଯାଇ ପାରେନା ।

କେବଳ ପୁସ୍ତକ ସମ୍ପାଦନା ଓ ପ୍ରକାଶନ ମଧ୍ୟରେ ତାଙ୍କର ମୟୂରଭଞ୍ଜର ଇତିହାସ ଚିନ୍ତା ସୀମିତ ନୁହେଁ । ସେ ବରଂ ଦୀର୍ଘ ୨୦ ବର୍ଷ ଧରି ସ୍ୱରାଜ, ଧରଣୀ, ପ୍ରଜାତନ୍ତ୍ର, ଦୈନିକ ଆଶା, ପ୍ରଜାର ଆମ ଖବର, ଉତ୍କଳ ପ୍ରସଙ୍ଗ ଆଦି ବିଭିନ୍ନ ପତ୍ରପତ୍ରିକାରେ ମୟୂରଭଞ୍ଜର ପ୍ରଖ୍ୟାତ ଯୋଦ୍ଧା ହୋହରା ବିଷୋୟୀ, ବାଳୁଙ୍କି ଚକରା ବିଷୋୟୀ, ସମର ଜୟପୁର ରାଜା କୃଷ୍ଣ ଭଞ୍ଜ, ଭଞ୍ଜନଗରର ଗୁପ୍ତ ସୁଡ଼ଙ୍ଗ, ମାଳତୀ ଗଡ଼ର ଦୀପ, ମୟୂରଭଞ୍ଜର ବିଚିତ୍ର ପାହାଡ଼, ଭଞ୍ଜନଗରର ଐତିହାସିକ ପୃଷ୍ଠଭୂମି, ସ୍ୱାଧୀନତା ସଂଗ୍ରାମରେ ଗଞ୍ଜାମର ଭୂମିକା, ଓଡ଼ିଶାରେ ମୁକ୍ତି ସଂଗ୍ରାମର ଝଲକ, ସ୍ୱାଧୀନତା ସଂଗ୍ରାମରେ କନ୍ଧମାନଙ୍କର ଭୂମିକା, ଭଞ୍ଜ ବଂଶର ଉତ୍ପତ୍ତି, ବୌଦ୍ଧର ପ୍ରାଚୀନ ବୌଦ୍ଧ ବିହାର ଆଦି ଉପରେ ଅର୍ଦ୍ଧ ଶତାଧିକ ପ୍ରବନ୍ଧ ରଚନା କରି ପ୍ରକାଶିତ କରିଛନ୍ତି । ଏହା ତାଙ୍କ ଇତିହାସ ଅଧ୍ୟୟନ ପ୍ରିୟତାକୁ ସୂଚିତ କରିଥାଏ ।

ମୋ ମତରେ ତାଙ୍କ ସାରସ୍ୱତ ସାଧନା ଅପେକ୍ଷା ଏହି ଇତିହାସ ଗବେଷଣା ପ୍ରିୟତା ତାଙ୍କୁ ପାଠକ ମହଲରେ ଅଧିକ ପ୍ରତିଷ୍ଠା ପ୍ରଦାନ କରିଛି । ମହାନ ବାଳୁଙ୍କି ଚକରା ବିଷୋୟୀ ପୁସ୍ତକର ଲେଖକ ମୟୂରଭଞ୍ଜ ପ୍ରେମୀ ବରିଷ୍ଠ

ସମାଲୋଚକ ଡକ୍ଟର ଶିବାନନ୍ଦ ପାଣିଗ୍ରାହୀ ମାଗୁଣି ବାବୁଙ୍କ ପରି ଜଣେ ପ୍ରତିଭାବନ୍ତ ବ୍ୟକ୍ତିଙ୍କ ସମ୍ପର୍କରେ ପ୍ରକାଶ କରୁଥିବା ଏହି ଅଭିନନ୍ଦନା ଗ୍ରନ୍ଥରେ ତାଙ୍କର ଐତିହାସିକ ବ୍ୟକ୍ତିତ୍ୱ ସମ୍ପର୍କରେ ମୁଁ ମାତ୍ର କିଞ୍ଚିତ ଆଲୋକପାତ କରିଯାଇଛି । ତାଙ୍କ ଶ୍ରମ ଓ ସାଧନା ଇତିହାସ ପ୍ରେମୀ ଗବେଷକ, ଛାତ୍ର ଓ ଅଧ୍ୟାପକମାନଙ୍କୁ ଅନୁପ୍ରାଣିତ କରିବ ଏ ଆଶା ମୋର ରହିଛି । ସେ ଶତାୟୁ ହୁଅନ୍ତୁ ।

ଇତି

ଭରତ ଦାସ ମହାନ୍ତି
ଦେବସ୍ଥାନ କଲେଜ
ବ. ଡ଼, ପୁର

# ପ୍ରକାଶକ ଶ୍ରୀ ମାଗୁଣୀ ଦାଶ

**ସୁଶାନ୍ତ କୁମାର କର**

ଯିଏ ପୁସ୍ତକ ପ୍ରକାଶ କରନ୍ତି ତାଙ୍କୁ ପ୍ରକାଶକ କୁହାଯାଏ । କିନ୍ତୁ କେତେକ ପ୍ରକାଶକ ଅଛନ୍ତି ଯେଉଁମାନେ ପୁସ୍ତକ ପ୍ରକାଶ କରନ୍ତି ସତ କିନ୍ତୁ ଏକ ଏକ ସ୍ୱତନ୍ତ୍ର ରୁଚିର ପୁସ୍ତକ ହିଁ ସେମାନେ ପ୍ରକାଶ କରିଥାନ୍ତି । ଏହି ସ୍ୱତନ୍ତ୍ର ରୁଚି ପାଇଁ ତାଙ୍କ ପ୍ରକାଶନ ସଂସ୍ଥା ହୁଏତ ବିଶେଷ ଲାଭବାନ ହୋଇଥାଏ ନଚେତ୍ କ୍ଷତିଗ୍ରସ୍ତ ହୋଇଥାଏ । କିନ୍ତୁ ଲାଭ କ୍ଷତି ପ୍ରତି ଭ୍ରୂକ୍ଷେପ ନ ରଖି ଏହି ଶ୍ରେଣୀର ପ୍ରକାଶକମାନେ ପୁସ୍ତକ ପ୍ରକାଶନ କରିଥାନ୍ତି । ଏହି ଶ୍ରେଣୀର ପ୍ରକାଶକଙ୍କୁ ମୁଁ ଖିଆଲି ପ୍ରକାଶକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିଥାଏ । ମାଗୁଣି ବାବୁ ଥିଲେ ଏହି ଶ୍ରେଣୀର ଜଣେ ଖିଆଲି ପ୍ରକାଶକ ।

ସେ ଏକାଧାରରେ ଜଣେ ଲେଖକ ଓ ପ୍ରକାଶକ । ଅବଶ୍ୟ ପ୍ରଥମେ ଲେଖକ, ପରେ ପ୍ରକାଶକ । ତାଙ୍କ ପ୍ରକାଶନ ସଂସ୍ଥା ପଠନାଳୟ ଓ ବାସଭବନ ଅଭିନ୍ନ । ତଥାପି ସେ ନିଜ ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥାର ନାମକରଣ କରିଥିଲେ କବି ସମ୍ରାଟ ବୁକ୍ ଷ୍ଟୋର । ଏହି ନାମକରଣ ପଛରେ ତାଙ୍କର ମାତ୍ରାଧିକ ଭଞ୍ଜ ପ୍ରୀତି ଥିବା ବେଶ୍ ଅନୁମିତ ହୁଏ ।

କବି ସମ୍ରାଟ ବୁକ୍ ଷ୍ଟୋର ନାମ କରଣକୁ ସେ ସାର୍ଥକ କରିଥିଲେ । କାରଣ ତାଙ୍କର ପୁସ୍ତକାଳୟରେ କେବଳ ଭଞ୍ଜ ସାହିତ୍ୟ ଆଲୋଚନା, ଗବେଷଣା ସମ୍ବନ୍ଧିତ ପୁସ୍ତକ ହିଁ ବିକ୍ରୀ କରାଯାଉଥିଲା । ସେ ଭଞ୍ଜଙ୍କର ଅପ୍ରକାଶିତ ଗ୍ରନ୍ଥ ସଂଗ୍ରହ କରି ଛାପୁଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ, ସାହିତ୍ୟିକ ଆକଳନ, ଭଞ୍ଜଙ୍କୁ ନେଇ ପ୍ରଚଳିତ କିମ୍ବଦନ୍ତୀ ଓ କାହାଣୀ ଇତ୍ୟାଦିକୁ ନେଇ ସେ ୧୮ ଖଣ୍ଡ ପୁସ୍ତକ ଛାପିଥିଲେ । ତାକୁ ସାରା ଓଡ଼ିଶାରେ ବିତରଣ କରୁଥିଲେ ।

ବେଳେବେଳେ ଦୁର୍ଲ୍ଲଭ ରଚନାବଳୀର ପୁନଃ ପ୍ରକାଶନ ପାଇଁ ମଧ୍ୟ ସେ ଚେଷ୍ଟା କରୁଥିଲେ । ଧନଞ୍ଜୟ ଭଂଜଙ୍କ ଅପ୍ରକାଶିତ ଥିବା ଶ୍ରୀକୃଷ୍ଣ କ୍ରୀଡ଼ା ଓ ଉପେନ୍ଦ୍ରଭଞ୍ଜଙ୍କ ଶୋଳପୋଇ, ଭଜନ, ସଂଗୀତ ଓ **ଚଉତିଶା ଆଦି** ବହୁ ଉପାଦେୟ ଗ୍ରନ୍ଥକୁ ସେ ପ୍ରକାଶିତ କରି ପାଠକ ଓ ଗବେଷକମାନଙ୍କ ପ୍ରଶଂସା ଭାଜନ ହୋଇ ପାରିଛନ୍ତି ।

ମାଗୁଣିବାବୁଙ୍କ ପ୍ରକାଶନ ସଂସ୍ଥା ଥିଲା ମହୋପଲବ୍ଧ ପ୍ରକାଶକମାନଙ୍କ ବିରୁଦ୍ଧରେ ଏକ ନୀରବ ପ୍ରତିବାଦ । ଓଡ଼ିଶାର ଅଧିକାଂଶ ଅଭିଜାତ ପ୍ରକାଶନ ସଂସ୍ଥା ଲେଖକମାନଙ୍କୁ ଉଚିତ ସମ୍ମାନ ଦେବା କିମ୍ବା ତାଙ୍କ ରଚନାବଳୀକୁ ପ୍ରକାଶ କରିବାକୁ ଆଗ୍ରହରେ ଆଗେଇ ଆସିବା କ୍ୱଚିତ ଦୃଷ୍ଟିଗୋଚର ହୁଏ । ଏଣୁ ସ୍ୱାଭିମାନୀ ମାଗୁଣି ବାବୁ ନିଜ ପୁସ୍ତକଟିଏ ଛପିବା ପାଇଁ ପ୍ରକାଶକଙ୍କ ଦ୍ୱାରସ୍ଥ ହେବାକୁ ଇଚ୍ଛା ପ୍ରକାଶ କରି ନାହାନ୍ତି । ବରଂ ନିଜେ ଗ୍ରନ୍ଥ ପ୍ରାଚୀନ ପୁସ୍ତିକାଦିର ଜନ ପ୍ରିୟତା ଓ ପଠନ ପ୍ରିୟତା ପ୍ରତି ବିଶେଷ ଦୃଷ୍ଟି ଦେଇଛନ୍ତି ।

ତାଂକର ସାମୟିକ ଭକ୍ତନଗରରୁ ସ୍ଥାନାନ୍ତର ପରେ କବି ସମ୍ରାଟ ବୁକ୍ ଷ୍ଟୋର ପରି ଏକ ଗବେଷଣାଧର୍ମୀ ପୁସ୍ତକ ପ୍ରକାଶନ ସଂସ୍ଥା ଏକ ରକମ ବନ୍ଦ ହୋଇ ଯାଇଛି । ଏବେ ବି ଭକ୍ତପ୍ରେମୀ ଗବେଷକମାନଂକ ଠାରୁ ମାଗୁଣି ବାବୁଂକ କବି ସମ୍ରାଟ ବୁକ୍ ଷ୍ଟୋର ନାମରେ ଚିଠି ଆସେ, କିନ୍ତୁ ଷ୍ଟୋରର ବୋର୍ଡ଼ ନ ଥିବାରୁ ପୋଷ୍ଟମ୍ୟାନ ତାଂକ ପରିବର୍ତ୍ତିତ ଠିକଣାରେ ଗଡ଼ାଇଦେଇ କରି ପଠାଏ ତେଦ୍ୱାର ତାଂକର ସାଂପ୍ରତିକ ରହୁଣି ଠିକଣାକୁ । ମାଗୁଣି ବାବୁଂକ ଏହି କ୍ଷୁଦ୍ର ପ୍ରକାଶନ ସଂସ୍ଥା ତାଂକ ଶ୍ରମ ଓ ସାଧନାର ଏକ ଉଜ୍ଜ୍ୱଳ ଦିଗ ଏଥିରେ ସଂଦେହ ନାହିଁ ।

● ●

ଶିଶୁ ସାହିତ୍ୟିକ
ଗ୍ରା: ଧନଞ୍ଜୟପୁର (ଜୁଗୁଡ଼ା)

# ସଂଗ୍ରାହକ ଶ୍ରୀ ମାଗୁଣି ଦାଶ

## ଅଧ୍ୟାପକ ଶିଶିର କୁମାର ଷଡଙ୍ଗୀ

ଗୁମୁସରର ପବିତ୍ର ମାଟିରେ ଯେଉଁ କେତେ ଜଣ କୃତି ସନ୍ତାନ ମହାତ୍ମାଗାନ୍ଧୀଙ୍କ ଡାକରାରେ ସ୍ୱାଧୀନତା ସଂଗ୍ରାମରେ ନିଜ ଜୀବନକୁ ଉତ୍ସର୍ଗୀକୃତ କରିଥିଲେ । ସେମାନଙ୍କ ମଧ୍ୟରୁ ଗାନ୍ଧୀବାଦୀ ନେତା ଶ୍ରୀଯୁକ୍ତ ମାଗୁଣି ଦାଶ ଅନ୍ୟତମ । ପିତା ଅନନ୍ତ ଦାଶ ଓ ମାତା ରେବତୀ ଦେବୀଙ୍କ ଗର୍ଭରୁ ଏହି ମହାତ୍ମାଙ୍କର ୧୯୨୦ ମସିହା ଜାନୁଆରୀ ଏକ ତାରିଖରେ ଜନ୍ମ ହୋଇଥିଲା । ଶ୍ରୀଯୁକ୍ତ ଦାଶଙ୍କର ଜନ୍ମ ଭଞ୍ଜନଗରଠାରୁ ୩୦ କି.ମି ଦୂରରେ ଅବସ୍ଥିତ ଜଗନ୍ନାଥ-ପ୍ରସାଦ ଶାସନଠାରେ । ସେ ସେତେବେଳର ମାଟ୍ରିକୁଲେସନ ଏବଂ ଆୟୁର୍ବେଦ ଶାସ୍ତ୍ରରେ ଶାସ୍ତ୍ରୀ ଯାଏଁ ଡିଗ୍ରୀ ହାସଲ କରିଥିଲେ ।

ଶ୍ରୀଯୁକ୍ତ ମାଗୁଣି ଦାସଙ୍କର ପିଲାଦିନୁ ବହୁମୁଖୀ ପ୍ରତିଭା ଦେଖିବାକୁ ମିଳେ । ସେ ଏକାଧାରରେ ସ୍ୱାଧୀନତା ସଂଗ୍ରାମୀ, । ସମାଜସେବୀ, ସଂସ୍କାରକ, ସଙ୍ଗଠକ ଓ ସଂଗ୍ରାହକ । ଅନ୍ୟ ଶିଶୁମାନେ ଖେଳ କୌତୁକରେ ମାତିଥିବା ବେଳେ ମାଗୁଣି ଗାଁ ଗାଁ ବୁଲି ପୂର୍ବ ପଲ୍ଲୀରେ ବ୍ୟବହୃତ ହେଉଥିବା ବିଭିନ୍ନ ଜିନିଷର ସରଞ୍ଜାମ ସଂଗ୍ରହ କରୁଥିଲେ । କେବଳ ସଂଗ୍ରହ ନୁହେଁ, ତାର ଉପଯୁକ୍ତ ସୁରକ୍ଷା ହୋଇ ପାରିବ ତାର ଯତ୍ନପରିବେଷଣ ଚେଷ୍ଟା ମଧ୍ୟ କରୁଥିଲେ । ସେଥିପାଇଁ ସେ ବେଳେବେଳେ ସାଙ୍ଗମାନଙ୍କ ଗହଣରେ ଅପଦସ୍ତ ତଥା ଅପ୍ରିୟ ହୋଇଛନ୍ତି । କିନ୍ତୁ ସେଥିପ୍ରତି ସେ ତିଳେ ମଧ୍ୟ ଭ୍ରୂକ୍ଷେପ କରି ନାହାନ୍ତି । ଏହାହିଁ ତାଙ୍କ ନିଜ ଜୀବନକୁ ଏକ ବିଶିଷ୍ଟ ବ୍ୟକ୍ତିତ୍ୱରେ ପରିଣତ କରି ପାରିଛି । ଏଥିପାଇଁ ନିଜ ଘରର ଏକ ପ୍ରକୋଷ୍ଠକୁ 'ଯାଦୁଘର' ବା 'ପ୍ରଦର୍ଶନଶାଳା' ରୂପେ ପରିଣତ କରିଛନ୍ତି । ବର୍ତ୍ତମାନ ସେ ୭୫ ବର୍ଷ ବୟସରେ ପଦାର୍ପଣ କରିଥିଲେ ମଧ୍ୟ ସେହି ବସ୍ତୁଗୁଡ଼ିକ ସଂଗ୍ରହ କରିବାରେ ସେ କୁଣ୍ଠାବୋଧ ଜମା ପ୍ରକାଶ କରି ନାହାନ୍ତି । ବରଂ ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ କହନ୍ତି—"ଏହି ବସ୍ତୁଗୁଡ଼ିକୁ ଦେଖିଲେ ମୋ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ମୁଁ ତନ୍ନ ତନ୍ନ ଭାବରେ ଦେଖିପାରେ (ଏହି ବସ୍ତୁ ଗୁଡ଼ିକ ହେଉଛି ମୋ ସଂଗ୍ରାମ ଜୀବନରେ ଇତିହାସ । ଏହି ବୟସରେ ମଧ୍ୟ ଯୁବକଙ୍କ ଭଳି ତାଙ୍କ ମୁହଁରେ ହସ ଦେଖିବାକୁ ମିଳେ ।

ପିଲାଦିନୁ ମାଗୁଣିଙ୍କ ଝୁଙ୍କ ଥିଲା ପ୍ରାଚୀନ ତାଳ ପତ୍ର ଗ୍ରନ୍ଥଗୁଡ଼ିକୁ ସଂଗ୍ରହ କରିବା । ଏଥିପାଇଁ ସେ ଘୁମୁସରର କାନ୍ଧିକ ଗସ୍ତାମର ପ୍ରତ୍ୟେକ ଗ୍ରାମକୁ ପାଦରେ ଚାଲି ଚାଲିଯାଇ ଲୋକମାନଙ୍କୁ ଉପଯୁକ୍ତ ପାରିଶ୍ରମିକ ଦେଇ ସେହି ତାଳ ପତ୍ର ଗ୍ରନ୍ଥଗୁଡ଼ିକୁ ସଂଗ୍ରହ କରୁଥିଲେ । ପ୍ରତ୍ୟେକ ତାଳ ପତ୍ର ଗ୍ରନ୍ଥର ଉପାଦେୟ ଅଂଶ ଗୁଡ଼ିକ ଖୋଜି ବାହାର କରି ତାକୁ ମୁଦ୍ରଣ ଯନ୍ତ୍ରରେ ଛାପି ପୁଣି ଲୋକଲୋଚନକୁ ଆଣୁଥିଲେ ।

ପ୍ରାଚୀନ ତାଳ ପତ୍ର ଗ୍ରନ୍ଥ ସଂଗ୍ରହ ସମ୍ପର୍କରେ ସେ ଅନେକ ଅପ୍ରକାଶିତ ତାଳ ପତ୍ର ଗ୍ରନ୍ଥ ମଧ୍ୟ ସଂଗ୍ରହ କରି ସେଗୁଡ଼ିକ ପ୍ରକାଶିତ କରିଛନ୍ତି । ଏଥି ପାଇଁ ସେ ଅନେକ ପାରିଶ୍ରମିକ ମାଗି ନାହାନ୍ତି ଏବଂ ବହୁଳ ଭାବେ ଖର୍ଚ୍ଚାନ୍ତ ହୋଇଛନ୍ତି ତଥାପି ସେ ସେଥିରେ ମର୍ମାହତ ହୋଇ ନାହାନ୍ତି । ବରଂ ସେ ଗ୍ରନ୍ଥକୁ ପ୍ରକାଶ କରିଥିବାରୁ ଅତୀବ ଆନନ୍ଦିତ ହୋଇଛନ୍ତି । ପ୍ରକାଶିତ ଗ୍ରନ୍ଥମାନଙ୍କ ମଧ୍ୟରେ (୧) ଭଞ୍ଜ ବଂଶାନୁ ଚରିତ, ଯାହାର ପ୍ରଥମ ସଂସ୍କରଣ ୧୯୫୧ ମସିହାରେ ହୋଇଥିଲା (୨) ଭଞ୍ଜବଂଶ ଓ ଘୁମୁସର ବିଦ୍ରୋହ (୩) ଭଞ୍ଜବଂଶାବଳୀ (୪) ଶ୍ରୀକୃଷ୍ଣ ଲୀଳା (ଧନଞ୍ଜୟ ଭଞ୍ଜ) (୫) ଗୋଲପୋକ (ଉପେନ୍ଦ୍ର ଭଞ୍ଜ) (୬) ଚଟାଉ (ହେମେନ୍ଦ୍ର ଭଞ୍ଜ) । ଅତୀବ ଖୁସିର ବିଷୟ ଏହି ଯେ ଏହି ଗ୍ରନ୍ଥଗୁଡ଼ିକୁ ମୂଳ ଉତ୍ସ ରୂପେ ନେଇ ଅଧିକାଂଶ ବିଦ୍ୱାନ ଗବେଷକ ଏବଂ ଡକ୍ଟରେଟ୍ ପାଇବାକୁ ଉପଯୁକ୍ତ ବିବେଚିତ ହୋଇଛନ୍ତି । ଏହା ମାଗୁଣି ଦାଶଙ୍କ ପାଇଁ ଅତୀବ ଗୌରବର ବିଷୟ ।

ଏତଦ୍ ବ୍ୟତୀତ ସେ ପୃଥିବୀର ପ୍ରାୟ ସବୁ ଦେଶର ଡାକଟିକଟ ବର୍ଷ ଅନୁଯାଇ ସଂଗ୍ରହ କରିଛନ୍ତି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ସବୁ ଦେଶର ଆଚାର, ବ୍ୟବହାର ଚାଲିଚଳନ, ସଂସ୍କୃତି ପ୍ରତି ସେ ସମ୍ପୂର୍ଣ୍ଣ ସଚେତନ ।

ସେ ଘୁମୁସରର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଏକ ବିରାଟ ତାଲିକା ସଂଗ୍ରହ କରିଛନ୍ତି । ତା'କୁ ଛାପି ତାର ନାମକରଣ କରିଛନ୍ତି "ଘୁମୁସରର ସ୍ୱାଧୀନତା ସଂଗ୍ରାମୀ ସ୍ମରଣିକା" କେବଳ ସେତିକି ନୁହେଁ ଘୁମୁସର ବିଦ୍ରୋହରେ ବ୍ୟବହୃତ ହୋଇଥିବା ବିଭିନ୍ନ ତୋପଗୁଡ଼ିକୁ ମଧ୍ୟ ସେ ସଂଗ୍ରହ କରି ଅତି ଯତ୍ନରେ ସାଇତି ରଖିଛନ୍ତି ।

ସବୁଠାରୁ ମଜାର ବିଷୟ ଏହି ଯେ ଏକ ଶହ ବର୍ଷରୁ ଉର୍ଦ୍ଧ୍ୱ ଏହି ପୁରପଲ୍ଲୀରେ ବ୍ୟବହୃତ ହୋଇଥିବା ବିଭିନ୍ନ ପ୍ରକାର ଦିଆସିଲି ଏବଂ ସିଗାରେଟ ଖୋଳ ସଂଗ୍ରହ କରିବାରେ ସେ ସମ୍ପୂର୍ଣ୍ଣ ବ୍ୟସ୍ତ । ସେ ପ୍ରାୟ ୬୦ରୁ ଉର୍ଦ୍ଧ୍ୱ ବିଭିନ୍ନ

ପ୍ରକାର ଦିଆସିଲି ଖୋଳ ଏବଂ ୫୦ରୁ ଉର୍ଦ୍ଧ୍ୱ ଭିନ୍ନ କିସମର ସିଗେରେଟ ଖୋଳ ସଂଗ୍ରହ କରିଛନ୍ତି । ଏହି ଅଳିଆ ବସ୍ତୁଗୁଡ଼ିକ ସଂଗ୍ରହ ପଛରେ ତାଙ୍କର ଉନ୍ନତ ଧରଣର ଅଭିରୁଚି ପ୍ରଚ୍ଛନ୍ନ ଭାବରେ ଲୁଚି ରହିଛି ତାହା ହିଁ ପ୍ରମାଣିତ କରୁଛି । କେବଳ ସଂଗ୍ରହ ନୁହେଁ । ସେ ଯେଉଁ ଭଳି ଭାବେ ଶ୍ରପାସୁନକ [?] ପଦ୍ଧତି ଉପାୟରେ ସେଗୁଡ଼ିକୁ ସୁରକ୍ଷା କରିଛନ୍ତି, ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଜୀବନର ପରିଣତ ବୟସରେ ମଧ୍ୟ ସେ ଏଥିରୁ କ୍ଷାନ୍ତ ହୋଇ ନାହାନ୍ତି ।

ଏହି ମହାନ ବ୍ୟକ୍ତି ଅତ୍ୟନ୍ତ ସରଳ ପ୍ରକୃତିର, ଅମାୟିକ, ହୃଦୟବାନ, ଦୟାଳୁ ଭାବେ ସାଧାରଣ ଜୀବନ ଯାପନ କରନ୍ତି । ସଦା ସହାସ୍ୟ ବଦନ, ଅସହାୟ, ଅବହେଳିତ ଗୋଷ୍ଠୀର ସମୂହ କଲ୍ୟାଣ ସାଧନ ଅନ୍ୟ ସୁଲଭ ଗୁଣମାନଙ୍କ ମଧ୍ୟରେ ଅଭିନନ୍ଦନୀୟ ।

● ●

ଇତିହାସ ଅଧ୍ୟାପକ
ଆଞ୍ଚଳିକ ମହାବିଦ୍ୟାଳୟ
ଜଗନ୍ନାଥ ପ୍ରସାଦ

"ଏଇ ମୋ ଓଡ଼ିଆ ଝିଅ" କବିତାରେ ଓଡ଼ିଆ ଜାତିର ଗୌରବମୟ ଐତିହ୍ୟର ଅବତାରଣା କରିଛନ୍ତି । କବି ଶ୍ରୀ ଦାଶ ଓଡ଼ିଆ ମାନଙ୍କୁ ସମ୍ବୋଧନ କରି କହିଛନ୍ତି । ଯେ—

'ଏଇ ମୋ ଓଡ଼ିଆ ଝିଅ
ଯୁଦ୍ଧରେ ନାଚୁଛି ଏ ପାଟେ ସେ ଯାଟେ
କି ଆନନ୍ଦେ ମତ୍ତ ହୋଇ ।"

ଯୁଗେ ଯୁଗେ ଓଡ଼ିଆ ଜାତି ସମର ପ୍ରିୟ । ସମର କ୍ଷେତ୍ରରେ ଅତୀତ ଇତିହାସରେ ଓଡ଼ିଆ ଗୌରବର, ବୀରତ୍ୱର ପରାକାଷ୍ଠା ସେ ଦେଖାଏ । ତେଣୁ କବି ଆହ୍ୱାନ ଦେଇଛନ୍ତି ଯେ ଆଜି ଏତେ ଦେଲେ ଦୁର୍ବଳ ନ ହୋଇ ଜାଗିଉଠ. ଜାତିର ଜୀବନ ରକ୍ଷା ପାଇଁରେ । ଓଡ଼ିଆ ଜାତିର ଆତ୍ମ ମର୍ଯ୍ୟାଦା ପ୍ରଦାନ ପୂର୍ବକ ଜଣ ସ୍ୱାଧୀନଆନ୍ଦୋଳନରେ ଯୋଗ ଦେବା ଆହ୍ୱାନ ଦେଇଛନ୍ତି ।

"ମୋର ବ୍ୟକ୍ତିଗତ ସତ୍ୟାଗ୍ରହ' କବିତା ମାଗୁଣି ବାବୁଙ୍କ ସ୍ୱାଧୀନ ସଂଗ୍ରାମୀ ମନୋବୃତ୍ତିର ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବନାହିଁ । ସେ କଟକ ଠି ଜଣେ ସ୍ୱଦକ୍ଷ ସୈନିକ ଭାବେ ଆନ୍ଦୋଳନରେ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ଅହିଂସା ମନ୍ତ୍ରରେ ଦୀକ୍ଷିତ ହୋଇ ଶାନ୍ତି ସତ୍ୟାଗ୍ରହ କରିଥିଲେ । ତେଣୁ ସେ କହନ୍ତି—

× × ×

ହୋଇଛି ମୁଁ ମଧ୍ୟ ସେ ସ୍ୱାଧୀନ ଯୁଦ୍ଧେ
ସ୍ୱାଧୀନତା ମୋହେ ବୃତ୍ତି ।'

ମୋହ ମାୟା ଭୁଲି ଦେଶମାତୃକାର ପରାଧୀନ ଶୃଙ୍ଖଳକୁ ଛିନ୍ନ କରିବା ପାଇଁ ବୀର ଦର୍ପରେ ଆତ୍ମୋତ୍ସର୍ଗ କରିବାର ଆଶାପୋଷଣ କରିଛନ୍ତି ।

'ଜାଗରେ ଆଜି ଭାରତ ଜାତି' ଏକ ଉଦ୍‌ବୋଧକ ମୂଳକ କବିତା । ଏଥିରେ କବି ଶ୍ରୀ ଦାଶ ଜାତି ଭେଦଭାବ ଭୁଲି ଜନ୍ମଭୂମିର ମୁକ୍ତି ପାଇଁ, ପୂର୍ବ ସମ୍ମାନ ଫେରି ପାଇବା ପାଇଁ, ବିଜୟର ଗୀତ ଗାଇବା ପାଇଁ ସ୍ୱାଧୀନଭାବେ ଜୀବନ ଧାରଣ କରିବା ପାଇଁ ଦଶଙ୍କର ହୋଇଥିବା ଆତ୍ମୋତ୍ସର୍ଗର ପ୍ରସ୍ତାବ ଦେଇଛନ୍ତି । ହିନ୍ଦୁ, ଖ୍ରୀଷ୍ଟ, ମୁସଲମାନ ସମସ୍ତେ ଭେଦଭାବ ଭୁଲି ଭାଇ ଭାଇ ହୋଇ ଖାନ୍ଦରେ ଖାନ୍ଦ ମିଶାଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାର ଆଶାପୋଷଣ କରି ସଙ୍ଗେ ସଙ୍ଗେ ଦେଶମାତୃକାର ମଙ୍ଗଳ ପାଇଁ ଏକତା ଓ ସଂହତିର ସୂତ୍ରରେ ବାନ୍ଧିହେବା ପାଇଁ ମଧ୍ୟ କାମନା କରିଛନ୍ତି ।

'ଡାଇଆ ସଢ ହୋଇଚ୍ଛି ଭଟେ' କବିତାରେ ସମସ୍ତେ ମାଆ ମୋର ଭୂମି ଦେବଳ ନିକ୍ଷୁପାତ ପଦ୍ମରେ ଆତ୍ମ ସମର୍ପଣ କରିବାର କାମନା କରୁଛ ।

'ଗୋପବନ୍ଧୁଙ୍କ ସ୍ମୃତି' ଏକ ଶୋକ ଗୀତିକା ଯେଉଁଥିରେ ଜନନପ୍ରାଣ, ତ୍ୟାଗୀ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱର ସ୍ମୃତି ସ୍ମରଣ ପୂର୍ବକ ତାଙ୍କୁ ଶ୍ରଦ୍ଧାଞ୍ଜଳି ନିବେଦନ କରାଯାଇଛି । ତାଙ୍କର ମହତ୍ତ୍ୱ ଆଦର୍ଶକୁ ସମସ୍ତେ ଗ୍ରହଣ କରି ଦେଶ ଓ ଦଶର ଉନ୍ନତି କଲେ ଜାତିସ୍ୱଚାର ଭବିଷ୍ୟତରେ ସମସ୍ତମାନ ହୋଇ ସ୍ୱାଧୀନତାରୂପୀ ଯଜ୍ଞକୁଣ୍ଡରେ ନିଜ ଜୀବନକୁ ଆହୁତି ଦେବା ପାଇଁ କବି ଶ୍ରୀ ଦାଶ ଆହ୍ୱାନ ଦେଇଛନ୍ତି । କବିଙ୍କ ଭାଷାରେ...

'ଶ୍ରଦ୍ଧାଂଶୁ ଅଶ୍ରୁତରଙ୍ଗେ
ଅଞ୍ଜଳିଭରି ଆଜି ଦ୍ୱାରେ ନାଅ ହେ ଗୋପବନ୍ଧୁ !
ଅବଶ ଭକ୍ତ ପ୍ରଣତେ !"

"କୃଷକ ଗୀତ" କବିତାରେ କବିଙ୍କର ନିପୀଡ଼ିତ କୃଷକ ଜାତି ପ୍ରତି ସମବେଦନା ପ୍ରକାଶ ପାଇଛି । ସାହୁ ଜମିଦାରଙ୍କ ପୀଡ଼ାରେ ପଦଦଳିତ କୃଷକ ସମାଜକୁ ଜାଗ୍ରତ ଓ ଚେତନଶୀଳ ହେବା ପାଇଁ କବି ଶ୍ରୀ ଦାଶ ପ୍ରେରଣା ଦେଇଛନ୍ତି ।

କୃଷୀ 'ମଜୁରିଆ ଓ ଶ୍ରମିକମାନଙ୍କୁ ଆହ୍ୱାନ ପୂର୍ବକ ଦେଶୋତ୍ତ କବିତା 'କୃଷୀଗୀତ' କବିତାରେ କବି ଶ୍ରୀ ଦାଶ କହନ୍ତି ଯେ ଅତ୍ୟାଚାରୀ ଶୋଷକ ସାହୁକାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଶୋଷଣ ମୁକ୍ତ ହୁଅ ।

'କଏଦୀର ଭାବନା' କବିତା ଗ୍ରନ୍ଥଟି କବି ଶ୍ରୀ ମାଗୁଣି ଦାଶଙ୍କର ପ୍ରାକ୍ ସ୍ୱାଧୀନତା କାଳର ଏକ କରୁଣ ରସାତ୍ମକ ଓ ଜାଗରଣ ମୂଳକ କବିତା ସଂକଳନ । ଏଥିରେ ଆଳଙ୍କାରିକ ଛନ୍ଦ ଓ ପଦ ଲାଳିତ୍ୟର ଚୌକିକ ବିଳାସ ନାହିଁ ସତ, କିନ୍ତୁ ଲେଖକଙ୍କ ଭାବପ୍ରବଣ କବିର ଆବେଗ ଓ ଅନୁଭୂତି ଅତି ଜୀବନ୍ତ ଭାବେ ଫୁଟି ଉଠିଛି । ଏହି ଗ୍ରନ୍ଥ ମାଗୁଣି ବାବୁଙ୍କୁ ଜଣେ ସଫଳ କବିର ସମ୍ମାନ ପ୍ରଦାନ କରିଥାଏ ।

ଗବେଷକ—ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଭଂଜ ବିହାର
ଜବା.ସ...ପାଟଳି ସାହି, ମଙ୍ଗଳପୁର, ଗଞ୍ଜାମ
ପିନ-୭୬୨·୧୧୭

# ସାହିତ୍ୟିକ : ମାଗୁଣି ଦାଶ

ନେତାଜୀ ବିଶୋୟୀ

ଘୁମୁସର — କବିର ମାଟି, କବିତାର ମାଟି, ବୀରମାଟି, ବିପ୍ଳବର ମାଟି ବିଦ୍ରୋହର ମାଟି । ଏ ମାଟି ଜନ୍ମ ଦେଇଛି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ, ବୀର ଚକରା ବିଶୋୟୀ ଏବଂ ଦୋରା ବିଶୋୟୀଙ୍କୁ । ଉକ୍ତ ମାଟିର ଐତିହ୍ୟ, ପରଂପରା, ସାହିତ୍ୟ, ସଂସ୍କୃତି ଏବଂ ବୀରତ୍ୱର ଜୟନ୍ତ ସ୍ରୋତ ଏକାଜିତ ହୋଇ ଓଡ଼ିଶା ତଥା ଓଡ଼ିଶା ବାହାରେ ଏବଂ ବିଶ୍ୱଦରବାରରେ ଅମ୍ଳାନ କୀର୍ତ୍ତି ଅର୍ଜନ କରି ଆସିଛି । ବୀର ଚକରା ବିଶୋୟୀ, ଦୋରା ବିଶୋୟୀ ସିପାହୀ ବିଦ୍ରୋହର ଅର୍ଦ୍ଧଶତାବ୍ଦୀ ପୂର୍ବରୁ ଯେଉଁ ଇଂରାଜୀ ବିରୋଧୀ କାର୍ଯ୍ୟ କରିଗଲେ ତାହା ଭାରତ ଇତିହାସରେ ଚିର ସ୍ମରଣୀୟ । ଏମାନେ ଇତିହାସ ବୁକୁରେ ଲୀନ ହୋଇଯାଇଛନ୍ତି ସତ, କିନ୍ତୁ ବଂଚିଛନ୍ତି ଇତିହାସର ପ୍ରତି ପୃଷ୍ଠାରେ, ଆମ ହୃଦୟରେ ଏବଂ ଘୁମୁସର ମାଟିର ପାଣି-ପବନରେ ।

ବୀର ଚକରା ବିଶୋୟୀ ଏବଂ ଦୋରା ବିଶୋୟୀଙ୍କ ବୈପ୍ଳବିକ ଏବଂ ଐତିହାସିକ ପାଦ ଚିହ୍ନରେ ଆପଣା ପାଦକୁ ଥାପି ଏଠି ଜନ୍ମ ନେଇଛନ୍ତି ଅନେକ ସ୍ୱାଧୀନତା ସଂଗ୍ରାମୀ, ସେମାନଙ୍କ ମଧ୍ୟରେ ଘୁମୁସରର ସୁପରିଚିତ ସଂଗ୍ରାମୀ ମାଗୁଣି ଦାଶ ଅନ୍ୟତମ ।

ଅତୀବ ଗୌରବର ବିଷୟ, ୧୫ ଅଗଷ୍ଟ ୧୯୭୨ ମସିହାରେ ସ୍ୱାଧୀନତା ପ୍ରାପ୍ତିର ପଚିଶି ବର୍ଷ ଉପଲକ୍ଷେ ସ୍ୱାଧୀନ ସଂଗ୍ରାମରେ ସ୍ମରଣୀୟ ଯୋଗଦାନ ପାଇଁ ଭାରତର ତତ୍କାଳୀନ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି ଦେଶ ପକ୍ଷରୁ ଶ୍ରୀ ମାଗୁଣି ଦାଶଙ୍କୁ ଏକ ତାମ୍ର ପତ୍ର ପ୍ରଦାନ କରିଥିଲେ ।

ରାଜ୍ୟସ୍ତରରେ ଓଡ଼ିଶାର ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ ଥିଲା ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ସ୍ୱାଧୀନ ସଂଗ୍ରାମୀ ମାଗୁଣି ଦାଶଙ୍କ ଭାରତୀୟ ମୁକ୍ତି ସଂଗ୍ରାମରେ ଉଲ୍ଲେଖନୀୟ ଅବଦାନ ପାଇଁ ଏହାର ସ୍ମାରକୀ ସ୍ୱରୂପ ଓଡ଼ିଶା ରାଜ୍ୟ ସରକାରଙ୍କ ପକ୍ଷରୁ ଏକ ସମ୍ମାନ ସୂଚକ ମାନପତ୍ର ପ୍ରଦାନ କରିଥିଲେ । ଘୁମୁସର ମାଟି ପାଇଁ ଏହାଠାରୁ ଗୌରବର ବିଷୟ ଆଉ ବା କଣ ହୋଇ ପାରେ ।

ଶ୍ରୀଯୁକ୍ତ ମାଗୁଣି ଦାଶ କେବଳ ଯେ ଜଣେ ସ୍ୱାଧୀନତା ସଂଗ୍ରାମୀ ତାହା ନୁହେଁ, ସେ ଏକାଧାରରେ ଜଣେ ବିଶିଷ୍ଟ ସମାଜସେବୀ, ପ୍ରଲେଖକ, ଭଞ୍ଜଗବେଷକ, କବି, ବକ୍ତା, ଓ ସାହିତ୍ୟିକ । ବାସ୍ତବରେ ଶ୍ରୀଯୁକ୍ତ ଦାଶ ଜଣେ ନୀରବ ନିଷ୍ଠାପର ସାଧକ ।

ଭକ୍ତ ସାହିତ୍ୟକୁ ଲୋକଲୋଚନକୁ ଆଣିବାରେ ଯେ ନେଇଅଛନ୍ତି ଅଗ୍ରଣୀ ବରପୁତ୍ର ଏହି ଗୁମୁସର ମାଟିର । ଉତ୍କଳୀୟ କଳା, ସଂସ୍କୃତି କ୍ଷେତ୍ରରେ ସେ ଏଥିରୁ ପାଣ୍ଡୁଲିପି, ତାମ୍ରଶାସନ, ଶିଳାଲେଖ, ପ୍ରାଚୀନ ମୁଦ୍ରା ଇତ୍ୟାଦି ସଂଗ୍ରହ କରିବା ମୌଳିକ ସାହିତ୍ୟ ଏବଂ ଐତିହାସିକ ଗବେଷଣାତ୍ମକ କର୍ମରେ ସେ ତାଙ୍କୁ ନିୟୋଜିତ କରି ଆସିଛନ୍ତି ।

“ରକ୍ତ ରଞ୍ଜିତ ଭଞ୍ଜବଂଶ” ଶ୍ରୀଯୁକ୍ତ ଦାଶଙ୍କର ଏକ ଅମ୍ଳାନ ରଚନା ! ଗୁମୁସର ପଲ୍ଲୀ ଗ୍ରାମକୁ ଯାଇ ଜନଶ୍ରୁତି ଅନ୍ବେଷଣ କରିବା, ଲୋକଙ୍କ କିମ୍ବଦନ୍ତୀ ଏବଂ ଲୋକଗୀତ ଓ ଗଳ୍ପ ସଂଗ୍ରହ କରିବା ମାଗୁଣି ଦାଶଙ୍କ ଦୈନନ୍ଦିନ ଜୀବନର ଏକ ଅଂଶ ଅଟେ ।

ଶ୍ରୀଯୁକ୍ତ ଦାଶ କହନ୍ତି : “ଜନ ସମାଜ ଉପେକ୍ଷିତ ଭଞ୍ଜଙ୍କ ଅନେକ ତାଳପତ୍ର ପୋଥି ଦୁଷ୍ପ୍ରାପ୍ୟ ଅବସ୍ଥାରେ ଅଛି । ସେଗୁଡ଼ିକ ଗାଁ ଗହଳରେ ସଂସ୍କୃତ ସଂସ୍କୃତି ବ୍ୟକ୍ତିମାନଙ୍କ ଘରେ ବହୁ ବହୁ ତାଡ଼ ପିଣ୍ଡାରେ ଅବହେଳିତ ରହିଛି, ଏଗୁଡ଼ିକ କିପରି ଲୋକଲୋଚନକୁ ଆସିପାରିବ ସେଥିପ୍ରତି ଦୃଷ୍ଟିଦେଇ ଯତ୍ନ କରିବା କର୍ତ୍ତବ୍ୟ ।”

ଭଞ୍ଜନଗର ଅଞ୍ଚଳରୁ ଶ୍ରୀ ମାଗୁଣି ଦାଶଙ୍କ ଅକ୍ଳାନ୍ତ ଉଦ୍ୟମ ଯୋଗେ “ଭଞ୍ଜ ବଂଶାନୁଚରିତ” ନାମକ ଏକ ତାଳପତ୍ର ପୋଥି ମିଳିଥିଲେ । ଏଥିରୁ ଭଞ୍ଜବଂଶର ଇତିହାସ ପ୍ରକାଶ କରିବେ । ଅବଶ୍ୟ ଏ ପୁସ୍ତକଟି ଶହ ଶହ ଭକ୍ତ ସାହିତ୍ୟ ପ୍ରେମୀଙ୍କୁ ଖୋରାକ ଯୋଗାଇ ପାରିଛି ।

ଏହା ବ୍ୟତୀତ ଶ୍ରୀଯୁକ୍ତ ଦାଶ ଭକ୍ତ ସାହିତ୍ୟର ଅନେକ ତଥ୍ୟ ସଂଗ୍ରହ କରିବାରେ ସକ୍ଷମ ହୋଇପାରିଛନ୍ତି । ଏହି ସମ୍ପର୍କୀୟ ଅନେକ ତାଳପତ୍ର ପୋଥିରୁ ସଂଗ୍ରହ କରିଥିବା କେତେକ ପ୍ରାମାଣିକ ତଥ୍ୟ ସହ ଆପଣା କୃତୀ ଜନ୍ମରେ ପ୍ରକାଶିତ କରାଯାଇଛି ।

୧ । ଚୌପଦୀ ଭୂଷଣ (ଧନଞ୍ଜୟ ଭଞ୍ଜଙ୍କ ତାଳପତ୍ର ପୋଥିରୁ ସଂଗୃହୀତ)

୨ । ଷୋଳପୋଇ (ଉପେନ୍ଦ୍ର ଭଞ୍ଜଙ୍କ ରଚନା ତାଳପତ୍ର ପୋଥିରୁ ସଂଗୃହୀତ ।

୩ । ଶ୍ରୀକୃଷ୍ଣ କ୍ରୀଡ଼ା (ଧନଞ୍ଜୟ ଭଞ୍ଜଙ୍କ ତାଳପତ୍ର ପୋଥିରୁ ସଂଗୃହୀତ)

୪ । ରସିକ-ଷ୍ଟୁରନ୍ତା (ଉପେନ୍ଦ୍ର ଭଞ୍ଜଙ୍କ ତାଳପତ୍ର ପୋଥିରୁ ସଂଗୃହୀତ)

୫ । ଭଞ୍ଜବଂଶ ଓ ଘୁମୁସର ଇତିହାସ (ତାଳପତ୍ର ପୋଥିରୁ ସଂଗୃହୀତ)

୬ । ଭଞ୍ଜ ବଂଶାନୁଚରିତ ( ,, )

ସ୍ୱ ଐତିହାସିକ କୃତୀ ହେଲା :—

୧ । ବସୁନ୍ଧରା ଚକ୍ରଧର ବର୍ମାସ୍ତ୍ରୀ

୨ । ଘୁମୁସର ଇତିହାସ

୩ । ଗଂଜାମ ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମରଣୀକା ।

ଦାଶଙ୍କ ଭଞ୍ଜୀୟ ସାହିତ୍ୟ କୃତୀ —

୧ । ଉପେନ୍ଦ୍ର ଭଞ୍ଜ ପରିକ୍ରମା

୨ । ଜନ୍ମଦାତ୍ରୀରେ ଭଞ୍ଜ

୩ । ଉପେନ୍ଦ୍ର ଭଞ୍ଜ (ଜୀବନୀ)

ଅନ୍ୟାନ୍ୟ ସାହିତ୍ୟ କୃତୀ ହେଲା—

୧ । ଆମ ମନ୍ଦିର ଆମ ଦେବତା

୨ । କୀର୍ତ୍ତି ଓ ସ୍ମୃତି

୩ । ଗୋପବନ୍ଧୁ ସ୍ମୃତି ଓ

୪ । ପ୍ରେମର ପରିଣାମ (ଉପନ୍ୟାସ)

ମାଗୁଣି ଦାଶଙ୍କ ସ୍ୱ ସାହିତ୍ୟ କୃତୀ ଆଲୋଚନା ଓ ପର୍ଯ୍ୟାଲୋଚନା କଲାବେଳେ ଜଣାଯାଏ । ଶ୍ରୀଯୁକ୍ତ ଦାଶ ଏକ ଧାରରେ ଜଣେ ଉଚ୍ଚକୋଟିର ଭଞ୍ଜ ସାହିତ୍ୟ ଗବେଷକ, ଐତିହାସିକ ଓ ସ୍ୱାଧୀନ ସଂଗ୍ରାମୀ । ବାସ୍ତବରେ ତାଙ୍କର ସାହିତ୍ୟ କୃତୀ ଓଡ଼ିଆ ସାହିତ୍ୟ ପାଇଁ ଅତୁଳନୀୟ ଦାନ ଅଟେ ।

ଭଞ୍ଜ କବିଙ୍କ ପ୍ରେମ ସୁଧାନିଧି କାବ୍ୟକୁ ବିଶ୍ଳେଷଣ କରିବାକୁ ଯାଇ ଶ୍ରୀ ଦାଶ କହନ୍ତି — 'ପ୍ରେମ ସୁଧାନିଧି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଗୋଟିଏ ପ୍ରେମ ଉପାଶ୍ରିତ ଆଦିରସ ପ୍ରଧାନ ଉତ୍କୃଷ୍ଟ କାବ୍ୟ । ପ୍ରେମ ସୁଧାନିଧିର ଆକ୍ଷରିକ ଅର୍ଥ ହେଉଛି — ପ୍ରେମ = ସ୍ନେହ ଓ ପ୍ରୀତି, ସୁଧାନିଧି = ଚନ୍ଦ୍ର, ଅର୍ଥାତ୍ ପ୍ରେମ ସୁଧାନିଧିର ସାହିତ୍ୟିକ

ଅର୍ଥ – ପ୍ରୀତି ରୂପଙ୍କ ତନ୍ତ୍ର, ଯେଉଁଠି ତନ୍ତ୍ରର ପରିକଳ୍ପନା କରାଯାଏ, ସେଠାରେ ସଂସାରରେ ଓଁକାରକଳ ଝଙ୍କାର ପ୍ରକାଶ ପାଇଥାଏ ।

ଶ୍ରୀଯୁକ୍ତ ମାଗୁଣି ଦାସ ଓଡ଼ିଶାର ଅନେକ ସାହିତ୍ୟ ଅନୁଷ୍ଠାନରୁ ପ୍ରଶଂସା ପତ୍ର, ମାନପତ୍ର ଏବଂ ସମ୍ମାନ ପାଇବା ସାଙ୍ଗକୁ ଏକାଧିକ ସାହିତ୍ୟାନୁଷ୍ଠାନ ଦ୍ୱାରା ଉତ୍କଳପ୍ରାନ୍ତ ଗୌରବ ଜଣାଇ ଅଛନ୍ତି । ଏହା ବ୍ୟତୀତ ଆକାଶବାଣୀ ଏବଂ ଦୂରଦର୍ଶନ କାର୍ଯ୍ୟକ୍ରମରେ ଯୋଗ ଦେଇ ସାହିତ୍ୟାଲୋଚନା କରିବାର ସୁଯୋଗ ପାଇ ପାରିଛନ୍ତି ।

ଅତଏବ, ଐତିହାସିକ, କବି, ଲେଖକ, ବକ୍ତା, ଭକ୍ତ ସାହିତ୍ୟ ଗବେଷକ, ସମାଜସେବୀ, ସାମ୍ବାଦିକ, ଔପନ୍ୟାସିକ, ସାହିତ୍ୟିକ ଏବଂ ସ୍ୱାଧୀନ ସଂଗ୍ରାମୀ ଶ୍ରୀଯୁକ୍ତ ମାଗୁଣି ଦାସଙ୍କ ଭବିଷ୍ୟତ ଚଲାପଥ ସୁଗମ ହେଉ ଏବଂ କର୍ମମୟ ଜୀବନରେ ଆହୁରି କିଛି କୃତିତ୍ୱ ହାସଲ କରନ୍ତୁ । ଶ୍ରୀ ଜଗନ୍ନାଥଙ୍କ ଠାରେ ମୋର ବାରମ୍ବାର ପ୍ରଣାମ କରେ ।



ସମ୍ପାଦକ
ଘୁମୁସର ସମ୍ବାଦ
ଗ୍ରା/ପୋ--ବାହାଡ଼ା ପଦର
୨୭।୧୧।୯୫

# ସାହିତ୍ୟ ସାଧକ ଶ୍ରୀ ମାଗୁଣି ଦାସଙ୍କ ପ୍ରଥମ ରଚନା

ଲତିକା ସିଂହ

ଆଧୁନିକ ଓଡ଼ିଆ ସାହିତ୍ୟକୁ ପୂର୍ବସୂରିଙ୍କ ଦାନ ଅତୁଳନୀୟ । ମଧ୍ୟଯୁଗୀୟ ସାହିତ୍ୟ ପରି ଆଧୁନିକ କାଳରେ ଅର୍ଥାତ୍ ସ୍ୱାଧୀନୋତ୍ତର ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ବହୁ ଲେଖକ ଏହି ସାରସ୍ୱତ ପରମ୍ପରାର ଦାୟାଦ ଭାବେ କଲମ ଚଳାଇ ଆସୁଛନ୍ତି । ପୂର୍ବସୂରୀଙ୍କ ଏହି ସାରସ୍ୱତ ସାଧକମାନଙ୍କ ମଧ୍ୟରେ କବି, ପ୍ରାବନ୍ଧିକ ଓ ଭକ୍ତ ଗବେଷକ ଶ୍ରୀ ମାଗୁଣି ଦାସ ଅନ୍ୟତମ । ସେ ଆଜୀବନ ସାହିତ୍ୟସେବୀ, ଓ ସୁଲେଖକ ଭାବେ ପାଠକମାନଙ୍କ ନିକଟରେ ସୁପରିଚିତ । ତାଙ୍କ ଲିଖିତ ସ୍ମରଣୀୟ ରଚନାମାନଙ୍କ ମଧ୍ୟରେ ଗୋପବନ୍ଧୁ ସ୍ମୃତି ଅନ୍ୟତମ ।

ଏହା ତାଙ୍କର 'ଲେଖକ ଜୀବନର ଆଦ୍ୟ କୁସୁମ'। ଏହି ପୁସ୍ତକର ପ୍ରକାଶକ ନିଜେ କବି ଶ୍ରୀ ଦାସ । ଏହି କ୍ଷୁଦ୍ର ଗୀତିକାଟି ଏକ ଐତିହାସିକ ସ୍ମୃତି ଦିବସରେ ଲିଖିତ । ସେ ଦିନ ଥିଲା ୧୯୪୩ ମସିହା ଅପ୍ରେଲ ୨୪ ତାରିଖ ଗୁରୁବାର ଶ୍ରୀ ଦାସ ତତ୍କାଳୀନ ରସେଲକୋଣ୍ଡା (ଆଧୁନିକ ଭଞ୍ଜନଗର) ଜେଲ୍‌ରେ କାରାରୁଦ୍ଧ ଅବସ୍ଥାରେ ଏହାକୁ ରଚନା କରିଥିଲେ । କାରଣ ଏହି ଦିନଟି ଥିଲା ଓଡ଼ିଶାର ବରେଣ୍ୟ ଜନସେବକ ଓ ସଂଗ୍ରାମୀ ମହାପୁରୁଷ ପୁଣ୍ୟାତ୍ମା ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପଞ୍ଚଦଶ ଶ୍ରାଦ୍ଧ ଦିବସ ।

ମୁକ୍ତି ସଂଗ୍ରାମର ମହାରଥୀ ଗୋପବନ୍ଧୁଙ୍କ ପବିତ୍ର ସ୍ମୃତିରେ କବି ଶ୍ରୀ ଦାସଙ୍କ 'ଅନ୍ତରରେ' ସୃଷ୍ଟି ହୋଇଛି ଆଲୋଡ଼ନ । ଗାନ୍ଧୀ ଓ ଗୋପବନ୍ଧୁଙ୍କ ଡାକରାରେ ଦେଶ ପାଇଁ ସ୍ୱରାଜ ପ୍ରାପ୍ତି ପାଇଁ ସଂଗ୍ରାମର କଠୋର ମାର୍ଗକୁ ସ୍ୱେଚ୍ଛାରେ ବରଣ କରିଥିବା କବି ଶ୍ରୀ ଦାସ ପୁଣ୍ୟାତ୍ମା ଗୋପବନ୍ଧୁଙ୍କୁ ସ୍ମରଣ କରି କାରାକକ୍ଷରେ ଏହି କବିତାଟି ରଚନା କରି କାରାମୁକ୍ତ ପରେ ପ୍ରକାଶ କରିଛନ୍ତି ।

ଚଉତିରିଶି ପଦ ବିଶିଷ୍ଟ ଗୋପବନ୍ଧୁ ସ୍ମୃତି ଗୀତିକା ସଂଗ୍ରାମୀ କବି ମାଗୁଣି ବାବୁଙ୍କ ଏକ ସ୍ମରଣୀୟ ରଚନା କେବଳ ନୁହେଁ ବରଂ ଏଥିରେ

ପ୍ରକାଶ ପାଇଛି ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ପ୍ରତି କବିଙ୍କର ଶ୍ରଦ୍ଧା ଓ ସମ୍ମାନ । ଗୋପବନ୍ଧୁଙ୍କ ତ୍ୟାଗପୂତ ଜୀବନର କରୁଣ କାହାଣୀ ସେବା, ତ୍ୟାଗ, କଷ୍ଟ ଓ ଦେଶପ୍ରୀତିର ଉଜ୍ଜ୍ୱଳ ଦାଗ । ଗୋପବନ୍ଧୁଙ୍କ ଚରିତ୍ରର କପରି ପ୍ରତିଫଳିତ, ତାହା ଏହି କବିତାରେ ଲକ୍ଷ୍ୟ କରି ଯାଇପାରେ । କବି ଗୋପବନ୍ଧୁଙ୍କୁ ଓଡ଼ିଆ ଜାତିଦ୍ୱାର ଅଭୀକ ପ୍ରହରୀ ରୂପେ ତୁଳନା କରି ଲେଖିଛନ୍ତି—

ଉତ୍କଳର ଘରେ ଘରେ
ଉଡ଼ୁଛି ଜାତୀୟ ଧ୍ୱଜା ଗର୍ବରେ
ହେ ଗୋପବନ୍ଧୁ
ଉଠେ ତବ ନାମ ପ୍ରଥମରେ
ହେ ଗୋପବନ୍ଧୁ

× × ×

ପୁଣି ଅନ୍ୟତ୍ର ଲେଖିଛନ୍ତି—
ଛିନ୍ନ ଭିନ୍ନ ମାତା ହେବେ
ତୁମ୍ଭ ସବୁ ଦୁଃଖ ଲଭିଲ କେତେ
ହେ ଗୋପବନ୍ଧୁ
ଛାଡ଼ିଗଲ ନ ଦେଖି ତା କେତେ
ହେ ଗୋପବନ୍ଧୁ ।

ପ୍ରାଚୀନ ଚଉତିଶା ଛନ୍ଦରେ ଲିଖିତ ଏହି କବିତାରେ ସରଳ ଓ ସରସ ରୀତିରେ କବି ଉତ୍କଳ ପ୍ରାଣ ଗୋପବନ୍ଧୁଙ୍କ କୃତି ଓ କୀର୍ତ୍ତିକୁ ଅତି ଭାବପ୍ରବଣତାର ସହ ପରିବେଷଣ କରିଥିବା ପରି ମନେ ହୁଏ ।

ଗୋପବନ୍ଧୁଙ୍କ ସଙ୍କଳ୍ପ ଥିଲା ଓଡ଼ିଶାକୁ ସ୍ୱତନ୍ତ୍ର ରୂପ ଗଢ଼ି ତୋଳିବା । ସେଥିପାଇଁ ସେ ଛିନ୍ନାଞ୍ଚଳରେ ଆନ୍ଦୋଳନ ଚଳାଇଥିଲେ । ତାଙ୍କର ସହଯୋଗରେ ଉତ୍କଳ ସମ୍ମିଳନୀ ଏକ ଜାତୀୟ ଅନୁଷ୍ଠାନ ରୂପେ ପ୍ରତିଷ୍ଠା ଲାଭ କରିଥିଲା । କିନ୍ତୁ ଦୁର୍ଭାଗ୍ୟର କଥା ଯେ ଏହି ସ୍ୱପ୍ନ ସଫଳ ହେବା ପୂର୍ବରୁ ଚିର ବିଦାୟ ନେଲେ । ଏହି ଦୁଃଖଦାୟକ ତିରୋଧାନରେ କବି ମର୍ମାହତ ହେବା ସଙ୍ଗେ ସଙ୍ଗେ ତାଙ୍କ ଆଦର୍ଶ ଓ ଅବଦାନ ଚିରକାଳ ଏହି ଜାତିକୁ ପ୍ରେରଣା ପ୍ରଦାନ କରିବ ବୋଲି ଉଲ୍ଲେଖ କରିଛନ୍ତି । କବିଙ୍କ ଭାଷାରେ—

"ଅହିଂସା ଅସହଯୋଗେ
ଅସ୍ତ୍ର ଭଲ୍ଲ ଆଜି ଉତ୍କଳ ଜାଗେ
ହେ ଗୋପବଂଧୁ! ଅବଶ୍ୟ ତୁମ୍ଭ ପ୍ରଭାବେ ।

ତବ ଜଏ ନେବ ବାନ୍ଧି
ତାରବ ସଂକଟୁ ଉତ୍କଳ ଖାଇ
ହେ ଗୋପବନ୍ଧୁ!
ତୁମ୍ଭେ ଗଲ ଅନ୍ତର୍ଦ୍ଧାନ ହୋଇ ॥

ଅଚ୍କା ହୋଇ ସର୍ବେ ବସି
ଥିର ଦୃଷ୍ଟି ତୁମ୍ଭ ତଟେ ଜବେଶୀ
ହେ ଗୋପବନ୍ଧୁ! ଅସ୍ତୁ ଧଉ ହୃଅନ୍ତ୍ର ଆସ୍ୱାସୀ ॥

ଦୁଃଖିର ଦେଖିଲେ ଦୁଃଖ
ଦଣ୍ଡେ ସ୍ଥିର ନୋହୁ ତେଜିବ ସୁଖ
ହେ ଗୋପବନ୍ଧୁ!
ଦେବ ଦଶ ବାରେ ମାଗି ଭିକ୍ଷ ।

ଧର ହସ୍ତେ ଭିକ୍ଷାଝୁଲି ଧରେ ଗ୍ରାମେ ଗ୍ରାମେ
ବୋଝିବ ବୁଲି,
ହେ ଗୋପବନ୍ଧୁ!
ଧରମ ଛତର ଖୋଲି ॥

ଜରନ୍ତ ଓଡ଼ିଶାବାସୀ,
ଜର ତାଳୁଛନ୍ତି ଜରବେ ବସି
ହେ ଗୋପବନ୍ଧୁ!
ନ ଦେଖିଲେ ଥରେ ଏବେ ଆସି ॥

ଉପରୋକ୍ତ ବର୍ଣ୍ଣନାରେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଝଲକ ବେଶ୍ ପ୍ରକାଶ ପାଇଛି । ମାତ୍ର ଚଉତରିଶି ପଦ ବିଶିଷ୍ଟ ଏହି କ୍ଷୁଦ୍ର ଚଉତିଶାରେ

କବି ଶ୍ରୀ ଦାଶ ଓଡ଼ିଶାର ଜଣେ ଅସାମାନ୍ୟ ମହାପୁରୁଷଙ୍କ ଜୀବନାଦର୍ଶ, କୃତି, ଓ କୃତିତ୍ୱକୁ ଯେପରି ଭାବରେ ପ୍ରକାଶ କରିଛନ୍ତି ତାହା ତାଙ୍କ ଉଦାର କବି ପ୍ରାଣର ପରିଚୟ ପ୍ରଦାନ କରିଥାଏ । କବି ଶ୍ରୀ ଦାଶଙ୍କ ଏହି କ୍ଷୁଦ୍ର ଗୀତିକାକୁ ତାଙ୍କ କବିତ୍ୱର ଆଦ୍ୟ ସ୍ଫୁରଣ ବୋଲି କୁହାଯାଇ ପାରେ । ଏହି ଜାତୀୟତାଧର୍ମୀ କ୍ଷୁଦ୍ର ଗୀତି କବିତା ରଚନାର ପ୍ରେରଣା ପରବର୍ତ୍ତୀ କାଳରେ ତାଙ୍କୁ ଉଚ୍ଚତର ସାହିତ୍ୟ ସାଧନା ପାଇଁ ବିଶେଷ ପ୍ରେରଣା ପ୍ରଦାନ କରିଥିବା ସ୍ପଷ୍ଟ ଅନୁମିତ ହୋଇଥାଏ । କ୍ଷୁଦ୍ର ସୃଷ୍ଟିରେ କବି ପ୍ରାଣର ଏହି ଝଲକ ଗୋପବନ୍ଧୁ ସ୍ମୃତି କବିତାକୁ ମହତ୍ତ୍ୱ ପ୍ରଦାନ କରିଛି ।



ଖ୍ରୀଷ୍ଟିଆନ୍ ଷ୍ଟ୍ରିଟ୍,
ଭଞ୍ଜନଗର

# କର୍ମବୀର ଓ ସାଧକ ମାଗୁଣି ବାବୁ

ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦାଶ

ଓଡ଼ିଆ ଭାଷାର ଜନ୍ମଭୂମି ମହାନ ଘୁମୁସରର କେତେ ଯେ କବି, ସାଧକ ଓ ଦେଶପ୍ରେମୀଙ୍କୁ ଜନ୍ମ ଦେଇଛି, ତାହାର ହିସାବ ଆଜି ପୁଦ୍ଧା ଲୋକ ଲୋଚନକୁ ଆସି ପାରି ନାହିଁ। ସରଳ, କଷ୍ଟସହିଷ୍ଣୁ, ସାଧକ, ସ୍ୱାଧୀନତା/ସଂଗ୍ରାମୀ, ସାମ୍ବାଦିକ, ଅବସର ପ୍ରାପ୍ତ ଜିଲ୍ଲା ଲୋକ ସଂପର୍କ ଅଧିକାରୀ ଶ୍ରୀଯୁକ୍ତ ମାଗୁଣି ଦାଶ ଏହି ଭଞ୍ଜମାଟି ଘୁମୁସରର ଜଗନ୍ନାଥ ପ୍ରସାଦ ନିକଟସ୍ଥ ଜଗନ୍ନାଥପୁର ଶାସନରେ ଜନ୍ମ ଗ୍ରହଣ କରିଥିଲେ। ସେ ପୁଣ୍ୟବାନ, କାରଣ ଇଂରେଜ ସରକାରଠାରୁ ଲାଠିମାଡ଼ ଖାଇ ଜେଲ୍‌ରେ ରନ୍ଧା ମୁଗାଲେଣ୍ଡି ଅହରପା ବିଷ୍ଠାରେ ମିଶ୍ରିତ ମାଣ୍ଡିଆ ଚୁନାର "ଜାଉ" ଜେଲ୍‌ରେ ଖାଇ, ରୋଗୀ ନ ହୋଇ, ସେ ଭାରତମାତାର ସୁଯୋଗ୍ୟ ପୁତ୍ର ରୂପେ, ସ୍ୱାଧୀନ ଭାରତରେ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ମଧ୍ୟ, ସାହିତ୍ୟ ସାଧନାରେ ବ୍ରତୀ ହୋଇ, ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରି, କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ବିଷୟରେ ଯେଉଁ ଗବେଷଣାମାନ କରି ଯାଇଛନ୍ତି, ତାହା ନିଶ୍ଚୟ ଭବିଷ୍ୟତ ବଂଶଧରମାନଙ୍କର ଜୀବନ ଧାରାକୁ ବଦଳାଇବ। ଶ୍ରୀଯୁକ୍ତ ଦାଶ ପ୍ରକୃତରେ ଯଶସ୍ୱୀ କାରଣ ସରକାରୀ ଚାକିରିରୁ ଅବସର ନେଲେ ମଧ୍ୟ ସେ ବହୁ ଗ୍ରନ୍ଥ ପ୍ରଣୟନ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି।

**ସାହିତ୍ୟିକ ମାଗୁଣି ବାବୁ** — ସାହିତ୍ୟିକ ମାଗୁଣି ବାବୁଙ୍କୁ କିଏ ନ ଜାଣେ ? ବହୁ ଗ୍ରନ୍ଥର ରଚୟିତା ମାଗୁଣି ବାବୁ ଧନଞ୍ଜୟ ଭଞ୍ଜ ଓ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ବହୁ ଗବେଷଣାତ୍ମକ ଗ୍ରନ୍ଥ ରଚନା କରି ସମସ୍ତଙ୍କର ନମସ୍ୟ ହୋଇ ଯାଇଛନ୍ତି। ସେ ମହୋଦୟଙ୍କ ପ୍ରଣୀତ ଗ୍ରନ୍ଥମାନଙ୍କ ମଧ୍ୟରେ —

୧) ଭଞ୍ଜ ବଂଶାନୁଚରିତ

୨) ରସିକାନୁଚନ୍ଦ୍ରା

୩) ଭଞ୍ଜ ବଂଶ ଓ ଘୁମୁସର ବିଦ୍ରୋହ

୪) ଭଞ୍ଜ ବଂଶାବଳୀ

୫) ଶ୍ରୀକୃଷ୍ଣ କ୍ରୀଡ଼ା

ଗ୍ରନ୍ଥ ତଥା ପାଠାଗାର ପ୍ରେମୀ ମାଗୁଣି ବାବୁ—ସନ୍ଥ ଇମରସନ୍ କହୁଥିଲେ—"ମୋତେ ନର୍କକୁ ଛାଡ଼ିଦିଅ । ମୁଁ ସେଠି ସ୍ୱର୍ଗ ନିର୍ମାଣ କରିଦେବ" । ସନ୍ଥ ଇମରସନ୍‌ଙ୍କୁ ତାଙ୍କର ଜଣେ ବନ୍ଧୁ ପଚାରିଥିଲେ—"ଯଦି ଆପଣଙ୍କୁ ବର୍ତ୍ତମାନ ସ୍ୱର୍ଗକୁ ଯିବାକୁ କୁହାଯାଏ, ତେବେ ଆପଣ କଅଣ ପ୍ରସ୍ତୁତ ହେବେ ?" ଇମରସନ୍ ହଠାତ୍ ଭାବବିହ୍ୱଳ ହୋଇ କହିପକାଇଲେ—"ମୁଁ ପ୍ରଥମେ ମୋର ସବୁ ବହିତକ ରଖିବି । କାରଣ ସ୍ୱର୍ଗରେ ସମସ୍ତ ନଷ୍ଟ କରିବା ଉଚିତ ହେବ ନାହିଁ । ଆମ ମାଗୁଣିବାବୁ ପ୍ରକୃତରେ ଏତେ ଉଦାର ଏବଂ ଗ୍ରନ୍ଥପ୍ରେମୀ ତାହା ଅବର୍ଣ୍ଣନୀୟ । ଯେଉଁଠି ଯେଉଁ ବହି ଖଣ୍ଡିଏ ଦେଖିବେ, ହଠାତ୍ କିଣି ଆଣି ନିଜ ପାଠାଗାରରେ ସାଇତି ରଖିବେ । ତେବେ ଲେଖକ କହିଲେ "ବୃଦ୍ଧ ତ ହେଲିଣି ସମସ୍ତ ପାଠାଗାରକୁ କୌଣସି ଗୋଟିଏ ଉତ୍ତମ ଅନୁଷ୍ଠାନକୁ ଦାନ କରିବା । ଆପଣ ଖୋଜି ମୋତେ ଜଣାନ୍ତୁ ।"

ସବୁବେଳେ ଏହି ଗ୍ରନ୍ଥପ୍ରେମୀ ବହି ନ ପଢ଼ିଲେ ରହି ପାରନ୍ତି ନାହିଁ । ବାର୍ଦ୍ଧକ୍ୟରେ ମଧ୍ୟ ଏତେ କର୍ମତତ୍ପର ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି । ସବୁଦା କହନ୍ତି ବିନା ପାଠାଗାରରେ ଜାତିର ଉନ୍ନତି ଅସମ୍ଭବ । ପ୍ରତ୍ୟେକ ଘରେ ପାଠାଗାର ରହିଲେ ଭଲ ମଣିଷ, ବଡ଼ ମଣିଷ ଗଢ଼ି ଉଠିବେ ।

ବାର୍ଦ୍ଧକ୍ୟ ତାଙ୍କୁ ଛୁଇଁ ପାରିନି କାରଣ ଏ ବୟସରେ 'ତକିଆ ପାହି' ଯିବାକୁ ମୋତେ ବହୁବାର କହିଛନ୍ତି । ମୁଁ ପରିକ୍ରମା କରି ଆସିଥାଏ । ଅଦ୍ଭୁତ ଅରଣ୍ୟ । କହିଲେ ଆପଣ ଚାଲି ପାରିବେ ? ହେ ପ୍ରଭୁ ! ସେ ଯେଉଁ ଚାଲି ତାଙ୍କ ସଙ୍ଗେ ଅନ୍ୟମାନେ ଚାଲି ପାରିବେ ନାହିଁ ।

ମିଷ୍ଟଭାଷୀ ମାଗୁଣି ବାବୁ—ଫୁଲବାଣୀରେ ଲୋକ ସଂପର୍କ ବିଭାଗର ଜିଲ୍ଲା ଅଧିକାରୀ ଥାଆନ୍ତି । ବହୁ ନେତା ଆସନ୍ତି । ହଜାର ହଜାର ଲୋକ ଗହଳି ମଧ୍ୟରେ ସେ କେବେ ବିରକ୍ତ ହେବାର ଆମ ଦୃଷ୍ଟିଗୋଚରକୁ ଆସିନାହିଁ । ସେ ରାଗିବା କେହି ଦେଖି ନାହାନ୍ତି । କାହାରିକୁ କର୍କଶ ବଚନ କେବେ ଶୁଣାଇ ନାହାନ୍ତି । ସେ ଅତି ମିଷ୍ଟଭାଷୀ ।

ପରମେଶ୍ୱର ତାଙ୍କୁ ଦୀର୍ଘ ଜୀବନ ଦିଅନ୍ତୁ । କର୍ମଠ କରି ରଖନ୍ତୁ । ଓଡ଼ିଆ ସାହିତ୍ୟକୁ ସେ ଆହୁରି ଋଦ୍ଧିମନ୍ତ କରନ୍ତୁ । ଏତିକି ଭଗବାନଙ୍କ ନିକଟରେ ପ୍ରାର୍ଥନା ।



ଅତିରିକ୍ତ ଜିଲ୍ଲା କୃଷି ଅଧିକାରୀ
ଭଞ୍ଜନଗର

## ବହୁମୁଖୀ କର୍ମତତ୍ପରତାର ବ୍ୟକ୍ତିତ୍ୱ

## ଶ୍ରୀ ମାଗୁଣି ଦାଶ

ଡକ୍ଟର ପି. ଏସ୍. ଏନ୍. ପାଢ଼ୀ

ଭଞ୍ଜନଗର କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମହାବିଦ୍ୟାଳୟରେ ପ୍ରାୟ ୨୭ ବର୍ଷ ଅଧ୍ୟାପନା କରି ସେହି ଅଞ୍ଚଳର ସାଂସ୍କୃତିକ, ଶିକ୍ଷାଗତ, ସାହିତ୍ୟିକ ଏବଂ ଲୋକୋପକାରୀ ସାମାଜିକକାର୍ଯ୍ୟାବଳୀର ସକ୍ରିୟ ଅଂଶୀଦାର ହେବା ପାଇଁ ଯଥାସାଧ୍ୟ ଉଦ୍ୟମ କରିଥିଲି । ତାହା ଭୁଲିବାର ନୁହେଁ । ସେହି ଧାରାର ଅନ୍ୟତମ କର୍ମଠ ବ୍ୟକ୍ତିତ୍ୱ ଶ୍ରୀ ମାଗୁଣି ଦାଶଙ୍କ ସହିତ ମୋର ନିବିଡ଼ ସଂପର୍କ ସ୍ଥାପନ ମୋ ଜୀବନର ଏକ ସ୍ମରଣୀୟ ଅଧ୍ୟାୟ ଅଟେ । ମାଗୁଣି ବାବୁଙ୍କ ସରଳ ବ୍ୟବହାର, ସହାସ୍ୟମୟ ଭାବ ଏବଂ ମେଳାପି ଆଚରଣ ମୋତେ ଏପରି ପ୍ରେରଣା ଯୋଗାଇଥିଲା ଯେ ଅନ୍ତରଙ୍ଗ ଭାବେ ବହୁ ଦିନ ତାହାଙ୍କ ସାକ୍ଷାତ ନ କରି ରହି ପାରୁନଥିଲି । ସ୍ୱାଧୀନତା ସଂଗ୍ରାମଠାରୁ ଆରମ୍ଭ କରି ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ସେ ଅଲିଭା ସ୍ମୃତି ସୃଷ୍ଟି କରି ପାରିଛନ୍ତି ।

ଲୋକ ସଂପର୍କ ବିଭାଗର ଅଧିକାରୀ ଭାବେ କାର୍ଯ୍ୟ କରି ସମସ୍ତଙ୍କ ଭକ୍ତି-ଭାଜନ ହୋଇ ପାରିଛନ୍ତି ।

ଭଞ୍ଜନଗରଠାରେ ସ୍ଥାପିତ ଭଞ୍ଜ ସାହିତ୍ୟ ପରିଷଦ ଦକ୍ଷିଣ ଓଡ଼ିଶାର ଏକ ପ୍ରତିଷ୍ଠିତ ସାଂସ୍କୃତିକ କେନ୍ଦ୍ର ଭାବେ ସୁପରିଚିତ । ଏଥିପାଇଁ ମାଗୁଣି ବାବୁଙ୍କ ଭୂମିକା ଉଲ୍ଲେଖଯୋଗ୍ୟ । ରସୁଲକୋଣ୍ଡାକୁ ଭଞ୍ଜନଗର ଭାବେ ନାମକରଣ କରିବା ପାଇଁ ସେ ଐତିହାସିକ ପଦକ୍ଷେପ ନେଇଛନ୍ତି ।

ଭଞ୍ଜ ସାହିତ୍ୟର ସମୀକ୍ଷା ମାଗୁଣି ବାବୁଙ୍କର ଆଉ ଏକ ପ୍ରତିଭା । ଏହା ମୁଁ ଭଲ ଭାବେ ହୃଦୟଙ୍ଗମ କରି ପାରିଅଛି । ଲେଖକ, କବି ଏବଂ ସଂଗଠକ ଭାବେ ସେ ସୁଖ୍ୟାତି ଅର୍ଜନ କରି ପାରିଛନ୍ତି । କର୍ମତତ୍ପରତା ବ୍ୟକ୍ତିତ୍ୱର ସେ ଏକ ଦୃଷ୍ଟାନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଦୀର୍ଘ ଜୀବନ କାମନା କରୁଅଛୁ ।



ଅଧ୍ୟକ୍ଷ
ସିଟି କଲେଜ
ବ୍ରହ୍ମପୁର

## ଶ୍ରୀ ମାଗୁଣି ଦାଶଙ୍କ ଦ୍ୱାରା ଲିଖିତ, ତାଳପତ୍ର ପୋଥିରୁ ସଂଗୃହୀତ ଓ ପ୍ରକାଶିତ ଗ୍ରନ୍ଥ

ଗୋପବନ୍ଧୁ ସ୍ମୃତି (କବିତା)

ପ୍ରେମର ପରିଣାମ (ଉପନ୍ୟାସ)

ଭଞ୍ଜ ବଂଶାନୁଚରିତ (ତାଳପତ୍ର ପୋଥିରୁ ସଂଗୃହୀତ ୨ୟ ସଂସ୍କରଣ)

ରସିକାନୁଚନ୍ଦ୍ରା ,, ,,

ଭଞ୍ଜ ବଂଶାବଳୀ ,, ,,

ଭଞ୍ଜ ବଂଶ ଓ ଘୁମସର ବିଦ୍ରୋହ ,, ,,

ଶ୍ରୀକୃଷ୍ଣ କ୍ରୀଡ଼ା (ଧନଞ୍ଜୟ ଭଞ୍ଜ) ,, ,,

ଷୋଳପୋଇ (ଉପେନ୍ଦ୍ର ଭଞ୍ଜ) ,, ,,

ଚଉତିଶା (ଉପେନ୍ଦ୍ର ଭଞ୍ଜ) ,, ,,

ଶ୍ରୀ ରଘୁନାଥ କଣାଣ (ଭକ୍ତଚରଣ ଦାଶ) ,, ,,

ରସ ଲୀଳାମୃତ (ଉପେନ୍ଦ୍ର ଭଞ୍ଜ) ,, ,,

ଜନ୍ମଭୂମିରେ ଭଞ୍ଜ (ପ୍ରବନ୍ଧ)

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ (ଜୀବନୀ)

ଉପେନ୍ଦ୍ର ଭଞ୍ଜ ପରିକ୍ରମା (ଆଲୋଚନା ପ୍ରବନ୍ଧ)

ଉପେନ୍ଦ୍ର ଭଞ୍ଜ ଭଜନ ଓ ସଂଗୀତ (ତାଳପତ୍ର ପୋଥିରୁ ସଂଗୃହୀତ ଓ ପ୍ରକାଶିତ)

କଏଦୀର ଭାବନା (ଜେଲ ଭିତରେ ଲେଖା)

ଫୁଲବାଣୀର ଭଞ୍ଜ ସଂସ୍କୃତି

ଗଞ୍ଜାମ ସ୍ୱାଧୀନତା ସଂଗ୍ରାମୀ ଜୀବନୀ ସ୍ମରଣିକା

ଶ୍ରୀ ଶ୍ରୀ ମା ବୃନ୍ଦାବନେନ୍ଦୁ